

ଭାରତ ଗାଥା ...୪୬



ବେତାଳ କଥା ...୧୯



ଯକ୍ଷ ପର୍ବତ ...୧୧





## ସୂଚୀପତ୍ର



ଗତସଂଖ୍ୟା ଡିସେମ୍ବର-୨୦୦୦ ହୋଇଥିବାରୁ ଦୁଃଖିତ । ଏହା ଡିସେମ୍ବର-୨୦୦୧ ହେବ ।

-ସଂପାଦକ


**SUBSCRIPTION**

**For USA and Canada**
**Single copy $2**
**Annual subscription $20**
***Remittances in favour of Chandmama India Ltd.***
**to**
**Subscription Division**
CHANDAMAMA INDIA LIMITED
No. 82, Defence Officers Colony
Ekkatuthangal, Chennai - 600 097
E-mail : subscription@chandamama.org

**Gift Subscriptions**
**By Air Mail to All Countries other than India**
**Twelve issues Rs. 900**
**Within India Rs. 120**
**by book post**
Send your remittances by Demand Draft or Money Order favouring 'Chandama India Limited'



ସଂସ୍ଥାପକ
ବି. ନାଗି ରେଡ୍ଡି, ଚକ୍ରପାଣି

# ଅଧିକାର ଓ କର୍ତ୍ତବ୍ୟ

ଏବେ ଆମେ ୨୦୦୨ ମସିହାର ଏରୁଣ୍ଡି ଏପଟେ ଠିଆ ହୋଇ ଅପେକ୍ଷା କରୁଛୁ ଏକ ନୂତନ ବର୍ଷର ଆରମ୍ଭ ପାଇଁ । ମନରେ ଅସୁମାରୀ ଆଶା, ଆକାଂକ୍ଷା । ଆଜିକୁ ପଚାଶ ବର୍ଷ ତଳେ ପଣ୍ଡିତ ଜବାହାର ଲାଲ ନେହେରୁଙ୍କ ନେତୃତ୍ୱରେ ଭାରତର ପ୍ରଥମ ନିର୍ବାଚିତ ସରକାର ଶାସନ କ୍ଷମତାକୁ ଆସିଥିଲେ । ଆମର ସଂବିଧାନ ପ୍ରଣିତ ହେଲା, ଏହାର ଠିକ୍ ଦୁଇ ବର୍ଷପରେ । ଜାନୁଆରୀ ୨୬, ୧୯୫୦ ରେ ଆମ ଭାରତବର୍ଷ ସାର୍ବଭୌମ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ଭାବେ ପରିଚିତ ହେଲା । ଅକ୍ଟୋବର ୧୯୫୧ ଏବଂ ଫେବୃଆରୀ ୧୯୫୨ ମଧ୍ୟରେ ଦେଶର ନାଗରିକଙ୍କ ମତାମତ ଗ୍ରହଣ କରାଗଲା ।

ଆମ ସଂବିଧାନ ପ୍ରତ୍ୟେକ ନାଗରିକଙ୍କୁ ଦେଶର ଏକତା, ସାର୍ବଭୌମତା ଓ ସଂହତି ରକ୍ଷା କରିବା ପାଇଁ ପ୍ରେରିତ କରିଥାଏ । ଏହା କିନ୍ତୁ ଆମର ଏକପ୍ରକାର ନୈତିକ କର୍ତ୍ତବ୍ୟ । ପରିବାରରେ ମାତା, ପିତାଙ୍କ ପ୍ରତି ଆମର ଯେପରି ଦାଇତ୍ୱ ଓ କର୍ତ୍ତବ୍ୟ ରହିଛି, ସେପରି ଭାରତ ମାତାଙ୍କ ପ୍ରତି ଆମର ଏକାଗ୍ର ଭକ୍ତି ଓ ଦାୟିତ୍ୱ ରହିଛି ।

ଭାରତର ସଂବିଧାନ ତାର ନାଗରିକ ମାନଙ୍କୁ କେତେଗୁଡିଏ ମୌଳିକ ଅଧିକାର ପ୍ରଦାନ କରିଛି, ଯଥା: ସ୍ୱାଧୀନ ମତବ୍ୟକ୍ତ କରିବାର ଅଧିକାର, ସ୍ୱାଧୀନଭାବେ ଧର୍ମ ଚର୍ଚ୍ଚା ଓ ଗ୍ରହଣ କରିବାର ଅଧିକାର, ଜୀବିକା ଅର୍ଜନ କରିବାର ଅଧିକାର, ଏପରିକି ସ୍ୱାଧୀନଭାବେ ବାଣିଜ୍ୟ ବ୍ୟବସାୟ କରିବାର ଅଧିକାର ଅର୍ନ୍ତଭୁକ୍ତ । ଆମ ସଂବିଧାନ କେବଳ ଅଧିକାର ପ୍ରଦାନ କରିନାହିଁ, ତା ସହିତ କେତେକ ଦାଇତ୍ୱ ମଧ୍ୟ ନ୍ୟସ୍ତ କରିଛି । ମହାତ୍ମା ଗାନ୍ଧୀଙ୍କ ଭାଷାରେ: ଆମର ଅଧିକାର ସାବ୍ୟସ୍ତ କରିବା ପୂର୍ବରୁ ଆମେ ଆମର କର୍ତ୍ତବ୍ୟ ପାଳନ କରିବା ଉଚିତ୍ । ସଂପ୍ରତି ଆମ ଦେଶ ସବୁ ସ୍ତରରେ ଏକ ସଂକଟ ମଧ୍ୟଦେଇ ଗତି କରୁଛି । ତେଣୁ ଏହି ଘଡିସନ୍ଧି ମୁହୂର୍ତ୍ତରେ ଆମେ ଶପଥ ଗ୍ରହଣ କରିବା ଉଚିତ୍, 'ଆମେ ନିଃସ୍ୱାର୍ଥପର ଭାବେ ଦେଶମାତୃକାର ସେବା କରିବା ଓ ଦେଶ ମାତୃକା କୁ ସମୃଦ୍ଧ କରିବା । ଏହାର ଏକତା ଓ ସଂହତି ପାଇଁ ସମ୍ମିଳତହୋଇ କାର୍ଯ୍ୟ କରିବା ।

ସଂପାଦକ : ବିଶ୍ୱମ

‘ଭାରତ ବୀରପୁରୁଷ’ ପହେଲି ପ୍ରତିଯୋଗିତା ରେ ଭାଗ ନିଅ ଓ ପ୍ରଚୁର ପୁରସ୍କାର ପାଅ

# ଭାରତର ବୀର ପୁରୁଷ-୪

ଆଧୁନିକ ଭାରତବର୍ଷରେ ଅଛନ୍ତି ଅନେକ ବୀର ପୁରୁଷ । ଏଠାରେ ସେମାନଙ୍କ ସମ୍ପର୍କରେ ସୂଚନା !

ତିନିଜଣ ସଠିକ୍ ଉତ୍ତର ଦାତାଙ୍କୁ ମିଳିବ ବାଇସାଇକେଲ.*



**1** ସେ ହେଉଛନ୍ତି ପ୍ରଥମ ଭାରତୀୟ, ଯେ କି ନୋବେଲ ପୁରସ୍କାର ପାଇଥିଲେ । ତାଙ୍କର ସଂଗୀତ ଅନେକ ଭାରତୀୟଙ୍କୁ ଜାତୀୟ ସଂଗ୍ରାମରେ ଝାସ ଦେବାକୁ ପ୍ରେରିତ କରିଥିଲା । ସେ କିଏ ?
.......................................................................

**2** ପୋଖରାନ ଠାରେ ପରମାଣୁ ପରୀକ୍ଷଣ ବେଳେ କେଉଁ ଭାରତୀୟଙ୍କ ନାମ ସ୍ମରଣ କୁ ଆସେ ? ସେ ଭାରତରତ୍ନ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି । ସେ କିଏ ? ............................................................

**3** ଫେବୃଆରୀ ୨୮ ତାରିଖକୁ ଆମେ ଜାତୀୟ ବିଜ୍ଞାନ ଦିବସ ଭାବେ ପାଳନ କରିଥାଉ । ଏହି ଦିବସ ଜଣେ ନୋବେଲ ବିଜେତାଙ୍କ ପ୍ରତି ନିବେଦିତ । ସେ ୧୯୨୮ରେ ‘ପଦାର୍ଥ ବିଜ୍ଞାନ ପୁରସ୍କାର’ ପାଇଥିଲେ । ସେ କିଏ ? ...........................................

**4** କିଏ ଏହି ସୀତାର ବାଦକ ଯେ ଇଂଲଣ୍ଡର ରାଣୀଙ୍କ ଠାରୁ ସମ୍ମାନଜନକ ‘ନାଇଟହୁଡ୍’ ପ୍ରାପ୍ତ ହୋଇଥିଲେ ? ........................................

**5** ସେ ଅନେକ ଲୋକଙ୍କ ହୃଦୟର ରାଜା, କଲିକତାରେ ଯାହାଙ୍କ ପାଇଁ ଏକ ମନ୍ଦିର ନିର୍ମିତ । ବର୍ତ୍ତମାନ ସେ ଏକ ଟି.ଭି. କାର୍ଯ୍ୟକ୍ରମର ଆୟୋଜକ । ସେ କିଏ ?
..............................................................

ପ୍ରତେକଟି ପ୍ରଶ୍ନର ସଠିକ୍ ଉତ୍ତର ସୁନ୍ଦର ଅକ୍ଷରରେ ଲେଖି ପଠାଇବେ । ଏହି ପାଞ୍ଚଜଣ ବୀର ପୁରୁଷଙ୍କ ମଧ୍ୟରୁ କିଏ ତୁମର ପ୍ରିୟ ଓ କାହିଁକି ? ‘ମୋର ପ୍ରିୟ ବୀର ପୁରୁଷ’ ଦଶଟି ଶବ୍ଦରେ ଲେଖ ।
..............................................................
..............................................................

ପ୍ରତିଯୋଗୀଙ୍କ ନାମ: ..............................................
ବୟସ: ............................ଶ୍ରେଣୀ: ..............................
ଠିକଣା: ..........................................................
..............................................................
..............................................................
ପିନ୍: ............................ଫୋନ୍: ..............................
ପ୍ରତିଯୋଗୀଙ୍କ ଦସ୍ତଖତ ..............................................
ଅଭିଭାବକଙ୍କ ଦସ୍ତଖତ ..............................................

ଦୟାକରି ଏହି ପୃଷ୍ଠାଟିକୁ ଚିରି ନିମ୍ନ ଠିକଣାରେ ପଠାନ୍ତୁ :
**Heroes of India Quiz- 4**
CHANDAMAMA INDIA LIMITED
No. 82, Defence Officers Colony
Ekkatuthangal, Chennai - 600 097.
On/before **Frebruary 5, 2002**

ବିଶେଷ ସୂଚନା

୧. ଏହି ପ୍ରତିଯୋଗିତା ୮-୧୪ ବର୍ଷ ପିଲାଙ୍କ ପାଇଁ ଉଦ୍ଦିଷ୍ଟ ।
୨. *ତିନିଜଣ ସଠିକ୍ ଉତ୍ତର ଦାତାଙ୍କୁ ଜହ୍ନମାମୁର ସମସ୍ତ ସଂସ୍କରଣ ଭିତ୍ତିରେ ବଛାଯିବ । ଯଦି କେହି ପ୍ରତିଯୋଗୀ ମୋ ପ୍ରିୟ ବୀର ପୁରୁଷଙ୍କ ସମ୍ପର୍କରେ ଏକାଧିକ ପ୍ରବେଶିକା ପତ୍ର ପଠାଇଥାନ୍ତି ତେବେ ତାହା ସର୍ବୋତ୍ତମ ଉତ୍ତର ଭିତ୍ତିରେ ଗ୍ରହଣ କରାଯିବ ।
୩. ବିଚାରକ ମାନଙ୍କର ନିଷ୍ପତ୍ତି ଚୂଡାନ୍ତ ଅଟେ ।
୪. ଏହି ପ୍ରତିଯୋଗିତା ସମ୍ପର୍କରେ ଚିଠି ପତ୍ର ଗ୍ରହଣ ଯୋଗ୍ୟ ନୁହେଁ ।
୫. ବିଜେତା ମାନଙ୍କୁ ପତ୍ର ଦ୍ୱାରା ଜଣାଇ ଦିଆଯିବ ।



# ଦାୟିତ୍ୱ

ରାମପୁରର ପୋଖରୀ କୂଳରେ କିଛିଲୋକ କୁଡିଆ କରି ରହୁଥିଲେ । ସେପରି ଏକ କୁଡିଆରେ ସୁଦାମ ରହୁଥିଲା । ସୁଦାମ ସହିତ ତାର ପତ୍ନୀ ଓ ପିଲାପିଲି ରହୁଥିଲେ । ସୁଦାମ ସ୍ୱଭାବରେ ଥିଲା ଅଳସୁଆ । କୁଡିଆ ଆଗରେ ଏକ ଖଟପକାଇ ଦିନରାତି ଶୋଇ ରହୁଥିଲା । କୌଣସି ପ୍ରକାର କାମ କରୁନଥିଲା । ତା'ର ସ୍ତ୍ରୀ ତାକୁ ତାର ଦାୟିତ୍ୱ ସମ୍ପର୍କରେ ଯେତେ କହିଲେ ମଧ୍ୟ ସେ ସମ୍ପର୍କରେ ସେ କର୍ଣ୍ଣପାତ କରୁନଥିଲା ।

ସବୁବେଳେ ସେ ଶୋଇ ଶୋଇ ସ୍ୱପ୍ନ ଦେଖୁଥିଲା ଓ ଭାବୁଥିଲା- କିପରି ବିନା ପରିଶ୍ରମରେ ଲୋକେ ମହାନ୍ ହୋଇଯାଇପାରନ୍ତି । ଦିନେ ସେ ସେପରି ହୋଇପାରିବ, ଏପରି ସଂଭାବନାରେ ତାର ମନ ଖୁସୀରେ ପୁରିଯାଉଥାଏ ।

ନିଜ ପତିର ଏପରି ଆଚରଣ ପାଇଁ ବିମଳା ଦୁଃଖିହେଲେ ମଧ୍ୟ କିଛି କରିପାରୁନଥାଏ । ଦିନକର କଥା । ସୁଦାମ ଖଟରେ ଶୋଇଥାଏ ! ହଠାତ୍ ଏକ କୁକୁରି ତାର ପଲେ ଛୁଆଙ୍କୁ କ୍ଷୀର ଦେଇ ଦେଇ ଥକିଗଲା । ଚିରରୁ ଆଉ କ୍ଷୀର ନମିଳିବାରୁ ପିଲାଗୁଡିକ କାନ୍ଦିବାରେ ଲାଗିଲେ । କୁକୁରିଟି କିଛି ଖାଦ୍ୟ ଆଶାରେ କୁଡିଆକୁ ପଶି ଖାଦ୍ୟ ଥାଳିରେ ମୁହଁ ମାରିଦେଲା । ଏହି ସମୟରେ ବିମଳା ଘରେ ପହଞ୍ଚି କୁକୁରିକୁ ଏକ ବଡ ଢେଙ୍ଗାରେ ମାରିଲା । କୁକୁରିଟି ଚିତ୍କାର କରି ବାହାରକୁ ଚାଲିଗଲା । ଏଥର ବିମଳା ବଡ ଚିନ୍ତାରେ ପଡିଲା । କୁକୁରି ମୁହଁ ମାରିଦେଇଥିବା ଖାଦ୍ୟ ଘରେ କିପରି ବା ଖାଇବେ ? ତେଣୁ ତାକୁ ନେଇ ବାହାରେ ଫିଙ୍ଗିଦେଲା । ଏଥର କୁକୁରି ଆସି ତାକୁ ମନ ଖୁସିରେ ଭକ୍ଷଣ କଲା । ଫଳରେ ପିଲାମାନେ ପ୍ରଚୁର କ୍ଷୀର ପାଇଲେ ।

ତାପରଦିନ ଠିକ୍ ସେଇ ସମୟ । ସୁଦାମ ନିଘୋଡ ନିଦରେ ଶୋଇଥାଏ । ହଠାତ୍ କୁକୁରିଟି ଘରେ ପଶିଲା । କୁଆଡେ ବିମଳାଥିଲା କେଜାଣି, ହଠାତ୍ ଏକ ବଡ଼ ଢେଲା କୁକୁରି ଆଡକୁ ଛାଡିଲା ।

କୁତ୍ତିଟି ଚିତ୍କାର କରିଚାଲିଗଲା । ଏତେ ଜୋର ଶବ୍ଦରେ ସୁଦାମ ଉଠି ପଡିଲା ।

ବିମଳାକୁ ବିରକ୍ତ ହୋଇ ପଚାରିଲା- ''କ'ଣ କୁତ୍ତିଟି ଆଜି ବି ଆସି ଘରେ ପଶିଥିଲା ? ତୁମେ ପରା ତାକୁ କାଲି ବାଡେଇ ତଡ଼ିଥିଲ ? ତଥାପି ସେ ମାନିଲା ନାହିଁ !''

ବିମଳା କଠୋର ଶବ୍ଦରେ ଜବାବ ଦେଲା: ''ଦେଖିଲ ତ ! କୁତ୍ତି ହେଲେବି ତାର ପରିବାର ପ୍ରତି କେତେ ସ୍ନେହ । ତିନି, ଚାରୋଟି ଛୁଆ ପାଳିବା ପାଇଁ ଦିନ ରାତି ସେ ଖାଦ୍ୟ ଖୋଜି ଚାଲିଛି । ମାଡ ଖାଇଲେ ବି, କଷ୍ଟ ହେଲେ ବି, ସେ ତାର ଦାୟିତ୍ୱରୁ ନିଜକୁ ବିରତ କରି ପାରୁନାହିଁ । ତୁମ କଥା ଦେଖ ! ତୁମେ ମଣିଷ ହୋଇବି, ତୁମର ବୁଦ୍ଧି ନାହିଁ । ପଶୁଟିଏ ତାର ପିଲାଙ୍କ ଦାଇତ୍ୱ ନେବା ପାଇଁ ଦିନରାତି ଖଟୁଛି ଓ ତୁମେ ଶୋଇଛ !''

ସୁଦାମ କୁ ବିମଳାର କଥା ବେଶ୍ ବାଧିଲା । ସେ ନିଜର ଦାଇତ୍ୱ ସମ୍ପର୍କରେ ସଚେତନ ହେଲା । ତୁରନ୍ତ ସେ ଖଟ ରୁ ଉଠି କାମ ସନ୍ଧାନରେ ବାହାରିଗଲା ।

ସେ ଯାଇ ସହରରେ ପହଞ୍ଚିଲା । ସେଠାରେ ସେ ଏକ ବଣିଆ ଦୋକାନରେ କାମ କଲା । ବଣିଆ ର ସୁନା କାରିଗରୀ ଓ ବେପାର ତାକୁ ଭଲ ଲାଗିଲା । ସେଠାରେ ସେ ସୁନାରେ ଗହଣା ତିଆରି ଆଦି କାମ ସହଜରେ ଶିଖିନେଲା ଓ ସୁନାରେ କେତେ ପରିମାଣରେ ଲାଭ ହୁଏ, ସେ ସମ୍ପର୍କରେ ତାର ବିଶେଷ ଜ୍ଞାନ ହେଲା । ଏବଂ ସଚ୍ଚୋଟ ମଣିଷ ପଣିଆ, ଦାୟିତ୍ୱ ବାନ ଭାବେ କାମ କରି ସେ ମାଲିକର ପ୍ରିୟ ହୋଇ ପାରିଲା । ଆସ୍ତେ ଆସ୍ତେ ସେଠାରେ ତାର ଦରମା ବଢ଼ିଲା ଏବଂ ସେହି ଟଙ୍କାରୁ ସେ କିଛି କିଛି ଘରକୁ ପଠାଇ କିଛି ସଞ୍ଚୟ କଲା । ଏହି ପରି ପରିଶ୍ରମ କରି ସେ ଗରାଖ ମାନଙ୍କର ପ୍ରିୟଭାଜନ ହୋଇ ପାରିଲା । ଏବଂ ନିଜେ ଏକ ଦୋକାନ ଖୋଲିବା ପାଇଁ ସ୍ଥିର କଲା । ସଞ୍ଚୟ ଧନର ପରିମାଣ ବଢ଼ିବାରୁ ସେଥିରେ ସେ ନିଜର ଏକ ଦୋକାନ କରିବା ପାଇଁ ତାର ମାଲିକଠାରୁ ଅନୁମତି ପାଇଲା । ପରିବାର କୁ ଗାଁରୁ ସହରକୁ ନେଇ ଆସିଲା । ସୁନାଦୋକାନର ବ୍ୟବସାୟ ବଢ଼ିଲା । ଘରର ଦାୟିତ୍ୱ ଓ ଦୋକାନର ଦାୟିତ୍ୱ ନେଇ ତା ମନରେ ଏକ ଆତ୍ମ ବିଶ୍ୱାସ ସୃଷ୍ଟି ହେଲା । ପରେ ପରେ ସେ ସମସ୍ତଙ୍କ ପାଖରେ ଜଣେ ଦାୟିତ୍ୱବାନ ଲୋକ ଭାବରେ ପରିଚିତ ହେଲା ।



ପରାସ୍ତ କରିପାରିବୁ ନାହିଁ, ତେବେ ତୁମ ଯକ୍ଷ ମାନଙ୍କୁ ଧରି, ଏଇ ରାକ୍ଷସମାନେ ନାନା ପ୍ରକାର ନିର୍ଯ୍ୟାତନା ଦେବେ । ସେମାନଙ୍କର ଏକ ବିରାଟ ସୈନ୍ୟବାହିନୀ ପ୍ରସ୍ତୁତ ହୋଇ ରହିଛନ୍ତି । ସେମାନେ ତୁମ ପର୍ବତର ସର୍ବନାଶ ନ କରି ଛାଡିବେ ନାହିଁ । ମୋ କଥା ଶହେ ପ୍ରତିଶତ ସତ୍ୟ ଅଟେ ।''

''ରାକ୍ଷସ-ସେନା !'', ଏପରି କହି ମଣିଭୂଷଣ ବୋକା ହୋଇ ଗଲା । ତା'ର ଚେହେରା ଫିକା ପଡିଗଲା ।

''ହଁ, ହଁ, ରାକ୍ଷସ ସେନା ।'' ତା'ପରେ ରାକ୍ଷସୀ ଆଡକୁ ବୁଲିପଡି ଜୀବଦତ୍ତ କହିଲା, ''ଏଥିରେ ଲଜ୍ଜିତ ହେବାର କିଛି ନାହିଁ । ଯେତେ ଦରକାର ସେତେ ହରିଣ ମାଂସ ନେଇଯାଅ । ଆଉ ଗୋଟିଏ କଥା ଶୁଣ । ତୁମ ଇଲାକାର ରାକ୍ଷସଙ୍କର ମହାନ ନେତା ମହୋଗ୍ରନେତ୍ରକୁ କହିବ ଯେ ଯକ୍ଷ ପର୍ବତ ଉପରେ ଆକ୍ରମଣ କରିବାକୁ ଆଉ ଅଳ୍ପ ସମୟ ବାକି ଅଛି । କିନ୍ତୁ ଏହି ଆକ୍ରମଣ ଯେ କୌଣସି ସମୟରେ ଆରମ୍ଭ ହୋଇପାରେ । ତେଣୁ ସେମାନଙ୍କୁ ସଜାଗ ରହିବାକୁ କହିବ ।''

ରାକ୍ଷସୀ ମଥା ହଲାଇ ଅଧିକରୁ ଅଧିକ ମାଂସ ନେଇ ନିଜ ଗୁମ୍ଫା ଆଡକୁ ଚାଲିଗଲା । ତା'ପରେ ସେମାନେ ତିନିଜଣ ଭୋଜନ କଲେ ଓ ଗଛ ତଳେ ଥିବା ପଥର ଉପରେ ଶୋଇ ପଡିଲେ । ମଣିଭୂଷଣ ଏଇ ଦୁଇଜଣଙ୍କ ଠାରୁ କିଛି ଦୂରରେ ଶୋଇଲା । ଶୋଇବା ପୂର୍ବରୁ ସେ ଦୁଇ ତିନି ଥର ନୌକା ଆଡେ ଚାହିଁଲା । ଖଡ୍‌ଗବର୍ମା ଏହା ଲକ୍ଷ୍ୟ କରି ପାରିଲେ । ସେ ଜୀବଦତ୍ତଙ୍କୁ ଧୀର ସ୍ୱରରେ କହିଲେ, ''ଯକ୍ଷ ଡରି ଯାଇଛି । ମୋର ଯାହା ମନେ ହେଉଛି, ରାତି ଅଧରେ ସେ ଏଠାରୁ ନୌକା ନେଇ ଚାଲି ଯାଇପାରେ । ତା'ଉପରେ ନଜର ରଖିବାକୁ ହେବ ।''

ରାତି ଅଧ ବେଳକୁ ମାଟିକୁ ଶୁଂଘି ଶୁଂଘି ଗୋଟିଏ ଭାଲୁ ସେଠାରେ ଆସି ପହଞ୍ଚିଲା । ସମ୍ଭବତଃ ତା'କୁ ମଧ ହରିଣର ବାସ୍ନା ଏଠାକୁ ଟାଣି ଆଣିଲା । ସେ ମଣିଭୂଷଣର ଚାରି ପଟେ ବୁଲି ସେଠାରୁ ଯିବାକୁ ବାହାରିଥିଲା । ଖଡ୍‌ଗବର୍ମା ଫୁର୍ତ୍ତିରେ ଉଠି ବସିଲେ ଓ ତା'ଉପରକୁ ଗୋଟିଏ ଛୋଟ ପଥର ପକାଇଲେ । ସେ ଡରି ଯାଇ ସେଠାରୁ ଧାଇଁ ପଳାଇଲା ।

ପଶୁର ଧାଇଁ ପଳାଇବାର ଶବ୍ଦରେ ମଣିଭୂଷଣ ମଧ ଉଠି ବସିଲା ଓ ଚାରିପଟକୁ ଲକ୍ଷ୍ୟ କରି ଚିଲ୍ଲେଇ ଉଠିଲା, ''ଖଡ୍‌ଗବର୍ମା, ଜୀବଦତ୍ତ, ଉଠ ! ରାକ୍ଷସ ସେନା ଆମ ଆଡକୁ ମାଡି ଆସୁଛନ୍ତି ।''

(କ୍ରମଶଃ)







# CHANDAMAMA

## SUBSCRIPTION FORM

1. I want to subscribe to **CHANDAMAMA** in :

   ☐ English ☐ Hindi ☐ Marathi ☐ Gujarathi
   ☐ Bengali ☐ Oriya ☐ Assamese ☐ Telugu
   ☐ Kannada ☐ Tamil ☐ Malayalam ☐ Sanskrit

2. I would like a
   ☐ Local Subscription : Rs. 120 for one year (12 issues)
   ☐ Overseas Subscription : INR 900, US $ 20 for one year (12 issues)

3. Enclosed is a DD for Rs. ____________________.
   DD No:______________ , drawn on______________
   payable at Chennai, favouring " **CHANDAMAMA INDIA LTD** ".

4. Name & address to which copies are to be mailed
   ( Print in Block Letters):
   ______________________________
   ______________________________
   ______________________________
   ______________________________

5. You may introduce any of your friends/relatives to the **CHANDAMAMA** family by giving their names and addresses on the back of this page.



______________ ______________
Date Signature

Mail this form to : **CHANDAMAMA INDIA LIMITED,**
**82, DEFENCE OFFICERS' COLONY,**
**EKKATUTHANGAL, CHENNAI-600 097. INDIA,**
**e-mail : Chandamama @ vsnl.com**
**Fax / Tel : 044 - 234 73 99 / 234 73 84**

ବେତାଳ କଥା

# ଅଦ୍‌ଭୁତ ନୀରବତା

ନିଶା ଗରଜୁଥାଏ । ତୁହାକୁ ତୁହା ଶୀତଳ ପବନ ସାଙ୍ଗକୁ ମୃଦୁ ମୃଦୁ ବର୍ଷା । ବଣବୁଦା ଭିତରୁ ଭାସି ଆସୁଥାଏ ସାଇଁ ସାଇଁ ଶବ୍ଦ । ଶ୍ୱାନ, ଶ୍ୱାପଦଙ୍କ ରଡି ସାଙ୍ଗକୁ ଶୁଭୁଥାଏ ଅଶରୀରୀ ମାନଙ୍କର ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୋକରେ ଦିଶି ଯାଉଥାଏ ଭୟାନକ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେମାତ୍ର ବିଚଳିତ ନ ହୋଇ ସେହି ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟିଗଲେ ଏବଂ ବୃକ୍ଷାରୋହଣ ପୂର୍ବକ ଶବଟିକୁ ଉତାରି ଆଣିଲେ । ସେ ତା'କୁ କାନ୍ଧରେ ପକାଇ ଶୁନ୍‌ଶାନ୍ ଶ୍ମଶାନ ଅତିକ୍ରମ କରିବାକୁ ଆରମ୍ଭ କରିବାମାତ୍ରେ ଶବସ୍ଥିତ ବେତାଳ କହି ଉଠିଲା, ''କେଉଁ ପରିସ୍ଥିତିରେ ପଡି ତୁମେ ମୋତେ ଏଠାରୁ ନେଇଯିବା ପାଇଁ ଏତେ ବଦ୍ଧପରିକର



ହୋଇଛ ? ତୁମର ନୀରବତା ମୋତେ ଅଦ୍‌ଭୁତ ମନେ ହେଉଛି । ତୁମେ ରାଜା ସୁଶାନ୍ତଙ୍କ ପରି ମନେ ହେଉଛ । ତା'ଙ୍କ ବିଷୟରେ ତୁମେ ଜାଣିଛ କି ? ତେବେ ମୁଁ ତା'ଙ୍କ କଥା ଶୁଣାଉଛି । ଶୁଣ, ପଥଶ୍ରମ ଲାଘବ ହେବ ।'' ଏପରି କହି ବେତାଳ ଗପିବାରେ ଲାଗିଲା ।

ପୁଷ୍ପନଗରର ରାଜା ସୁଶାନ୍ତ ଥିଲେ ଅତ୍ୟନ୍ତ ଜ୍ଞାନୀ ଓ ଭଦ୍ର, ସେ ସାଧୁଜନମାନଙ୍କୁ ସାହାଯ୍ୟ କରୁଥିଲେ, କଳାକାର ଓ କବିମାନଙ୍କୁ ସମ୍ମାନ ଓ ଉପହାର ପ୍ରଦାନ କରୁଥିଲେ । ସେ ତା'ଙ୍କର ରାଜ୍ୟକୁ ସମୃଦ୍ଧିଶାଳୀ ଓ ପ୍ରଜାମାନଙ୍କୁ ସୁଖରେ ରଖିବା ପାଇଁ ସବୁ ପ୍ରକାରର ପ୍ରଚେଷ୍ଟା କରୁଥିଲେ । କିନ୍ତୁ ତା'ଙ୍କର ଗୋଟିଏ ମାତ୍ର ବଦ୍‌ଗୁଣ ଥିଲା, ତାହା ହେଉଛି ତା'ଙ୍କର କ୍ରୋଧ । ଥରେ ରାଜା ତାଙ୍କର କେତେଜଣ ସ୍ୱତନ୍ତ୍ର ନିମନ୍ତ୍ରିତ ଅତିଥିଙ୍କ ପାଇଁ ଏକ ନିର୍ଦ୍ଦିଷ୍ଟ ବ୍ୟଞ୍ଜନ ପ୍ରସ୍ତୁତ କରିବା ପାଇଁ ରାଜଅନ୍ତଃପୁରର ପାଚକଙ୍କୁ ନିର୍ଦ୍ଦେଶ ଦେଇଥିଲେ । କିନ୍ତୁ ସେହି ବ୍ୟଞ୍ଜନ ସ୍ୱାଦିଷ୍ଟ ନ ହେବାରୁ ରାଜା ତା'ଙ୍କୁ ଚାକିରିରୁ ବିତାଡ଼ିତ କରିବା ସହିତ, ତା'ଙ୍କ ରାଜ୍ୟରୁ ମଧ୍ୟ ତା'ଙ୍କୁ ବାହାର କରିଦେଲେ ।

ଯଦି କୌଣସି କର୍ମଚାରୀର କାର୍ଯ୍ୟରେ କେଉଁଠି କିଛି ଦୋଷତ୍ରୁଟି ପରିଲକ୍ଷିତ ହେଉଥିଲା, ସେ ରାଜାଙ୍କ ରୋଷର ଶିକାର ହେଉଥିଲା । କେବଳ ସେତିକି ନୁହେଁ, ହୁଏତ ତା'ଙ୍କୁ ଜୀବନ କିମ୍ୱା ଜୀବିକା ହରାଇବାକୁ ପଡୁଥିଲା ।

ଥରେ ଜଣେ ସାଧୁ ପୁରୁଷ ତା'ଙ୍କ ଦରବାରରେ ଉପସ୍ଥିତ ହେଲେ, ଓ ତା'ଙ୍କ ରାଜ୍ୟର ମନ୍ଦିର ସମ୍ମୁଖରେ ଦିବ୍ୟବାଣୀ ପ୍ରଚାର କରିବା ପାଇଁ ଅନୁମତି ଲୋଡ଼ିଲେ ।

''ହେ ମହାତ୍ମା ! ଆପଣଙ୍କର ପରିଚୟ ? ଆପଣ କେଉଁ ଦେଶରୁ ଆସିଛନ୍ତି ?'' ରାଜା ବିନମ୍ରତାର ସହ ପ୍ରଶ୍ନ କଲେ ।

''ମୋର ନାମ ପ୍ରଜ୍ଞାନନ୍ଦ । ମୁଁ ଖୁବ୍ ଅଳ୍ପ ଦିନ ତଳେ ହିମାଳୟରୁ ଫେରିଛି । ସେଠାରେ ବିଗତ ଦଶବର୍ଷ ହେଲା ମୁଁ ତପସ୍ୟା କରୁଥିଲି ।'' ସାଧୁ ଉତ୍ତର ଦେଲେ । ''ତପସ୍ୟାର ଫଳ ସ୍ୱରୂପ ମୋତେ ମାନସିକ ଶାନ୍ତି ପ୍ରାପ୍ତ ହୋଇଛି । କିନ୍ତୁ ମୋ ଗୁରୁ ମୋତେ କହିଛନ୍ତି, କେବଳ ନିଜ ପାଇଁ ମୋକ୍ଷର ମାର୍ଗ ଖୋଜିବା, ଜୀବନର ଉଦ୍ଦେଶ୍ୟ ନୁହେଁ । ଆମକୁ ଅନ୍ୟାନ୍ୟ ଅଭାଗା ନରନାରୀଙ୍କୁ ମୁକ୍ତିର ପଥ ଦେଖାଇବାକୁ ପଡ଼ିବ । ସେହି କାରଣରୁ ମୁଁ ଏଠାକୁ ଆସିଛି ।

ରାଜ ଉଦ୍ୟାନରେ ରାଜା ସୁଶାନ୍ତ ସ୍ୱାମୀଜୀଙ୍କ ପାଇଁ ଏକ କୁଟୀର ନିର୍ମାଣ ପାଇଁ ଆଦେଶ ଦେଲେ । ଉଦ୍ୟାନ ରକ୍ଷକ ସୁମଙ୍ଗଳକୁ ଡକାଇ, ସ୍ୱାମୀଜୀଙ୍କର ସମସ୍ତ ପ୍ରକାର ଯତ୍ନ ନେବା ପାଇଁ ନିର୍ଦ୍ଦେଶ ଦେଲେ ।

ଅଚିରେ ସୁମଙ୍ଗଳ ଓ ସ୍ୱାମୀଜୀଙ୍କ ମଧ୍ୟରେ



ପ୍ରଗାଢ଼ ବନ୍ଧୁତା ଗଢ଼ି ଉଠିଲା । ସୁମଙ୍ଗଳ ତା'ର ପତ୍ନୀ ଓ ଦୁଇଟି ପୁଅଙ୍କ ସହିତ ସେହି ଉଦ୍ୟାନ ମଧ୍ୟରେ ଥିବା ଏକ କୁଟୀରରେ ରହୁଥିଲା । ପ୍ରତିଦିନ ସକାଳେ, ପ୍ରାର୍ଥନା ପରେ ସ୍ୱାମୀ ପ୍ରଜ୍ଞାନନ୍ଦ ରାଜାଙ୍କ ସହିତ କିଛି ଘଣ୍ଟା ବିତାଉଥିଲେ । ରାଜା ସୁଶାନ୍ତ ବଡ ଆଗ୍ରହର ସହିତ ସ୍ୱାମୀଜୀଙ୍କ ବାଣୀକୁ ଶୁଣନ୍ତି ଓ ସେହି ଉପଦେଶ ଅନୁଯାୟୀ ଚଳିବା ପାଇଁ ଯଥାସାଧ୍ୟ ଚେଷ୍ଟା କରନ୍ତି । ସ୍ୱାମୀଜୀ ମଧ୍ୟ ମନ୍ଦିର ନିକଟକୁ ଯାଇ ଲୋକମାନଙ୍କୁ ପ୍ରବଚନ ଦିଅନ୍ତି ।

ସେ ସୁମଙ୍ଗଳ ସହିତ ରାତ୍ରିଭୋଜନ କରନ୍ତି ।

ଥରେ ରାଜା ଓ ସ୍ୱାମୀଜୀ ଉଦ୍ୟାନରେ ବିଚରଣ କରୁଥିଲେ ଓ ସୁମଙ୍ଗଳ ପାଖରେ ଥିବା ଏକ ବୁଦାକୁ ସଫା କରୁଥିଲା । ସେ ଲକ୍ଷ୍ୟ କଲା ଯେ, କେତେ ଗୁଡିଏ ମହୁମାଛି ସ୍ୱାମୀଜୀଙ୍କୁ ବିବ୍ରତ କରୁଛନ୍ତି । ସେ ସେଠାକୁ ଧାଇଁଗଲା ଓ ହାତ ହଲାଇ ମହୁମାଛିଙ୍କୁ ଘଉଡାଇବାକୁ ଚେଷ୍ଟା କଲା ।

କିନ୍ତୁ ସୁମଙ୍ଗଳ ଯେପରି ଭାବେ ସେମାନଙ୍କ ଆଲୋଚନାରେ ବାଧା ସୃଷ୍ଟି କଲା, ତାହା ରାଜାଙ୍କୁ ଆଦୌ ପସନ୍ଦ ହେଲାନାହିଁ । ''ତୁମେ ଆମ ଦୁଇଜଣଙ୍କ ଭିତରେ ଏପରି ଲମ୍ଫ ପ୍ରଦାନ କରିବାକୁ ସାହସ କଲ କିପରି ? କିଏ ତୁମକୁ ଏଠାକୁ ଡାକିଥିଲା ? ଯଦି ମହୁମାଛି ଆମକୁ ଅଧିକ ଅତିଷ୍ଠ ମନେ ହୋଇଥାନ୍ତେ, ତେବେ ମୁଁ ସ୍ୱାମୀଜୀଙ୍କୁ ରକ୍ଷା କରି ନ ଥାନ୍ତି ? ଦୂର ହୁଅ ! ମୋ ସମ୍ମୁଖରୁ ।'' ରାଜା କ୍ରୋଧରେ ଚିତ୍କାର କଲେ ।

ସୁମଙ୍ଗଳ ସ୍ତବ୍ଧ ହୋଇଗଲା । ମାତ୍ର ସ୍ୱାମୀଜୀ ତା'କୁ ରକ୍ଷା କରିବାକୁ ଆଗେଇ ଆସିଲେ, ''ତା' ଉପରେ ଏପରି ବିରକ୍ତ ହେବା ଶୋଭା ପାଉନାହିଁ ।'' ''ସେ ରାଜାଙ୍କୁ ଅନୁରୋଧ କଲେ ''ଯେତେହେଲେ, ସେ ମହତ୍ ଅଭିପ୍ରାୟ ନେଇ ଏପରି କରିଛି । ଯେତେବେଳେ ତୁମେ କ୍ରୋଧର ଅଧୀନ ହେଉଛ, ସେତେବେଳେ ନୀରବତା ଅବଲମ୍ବନ କରିବା ସବୁଠାରୁ ଉତ୍ତମ ଉପାୟ । ଯଦି କ୍ରୋଧବଶତଃ ତୁମେ ସୁମଙ୍ଗଳକୁ ଚାକିରୀରୁ ବାହାର କରିଦେବ, ତେବେ ତା' ବଦଳରେ ସେପରି କର୍ତ୍ତବ୍ୟ ପରାୟଣ ଓ ସାଧୁ ଲୋକଟିଏ ପାଇବା ସମ୍ଭବ ହୋଇ ନ ପାରେ ।''

ରାଜା ସୁଶାନ୍ତ ସାଧୁଙ୍କର ଉପଦେଶ ଗ୍ରହଣ କଲେ ଓ ସୁମଙ୍ଗଳକୁ କ୍ଷମା କରିଦେଲେ ।

କିଛି ମାସପରେ, ସ୍ୱାମୀଜୀ ସେଠାରେ ଆଉ ଅଧିକ ଦିନ ନରହିବାକୁ ସ୍ଥିର କଲେ । ଦିନେ ସେ ରାଜାଙ୍କୁ କହିଲେ, ''ମୋ ଜୀବନର ଲକ୍ଷ୍ୟ ହେଉଛି, ଅଧିକରୁ ଅଧିକ ଲୋକଙ୍କୁ ସତ୍‌ମାର୍ଗ ଦେଖାଇବାରେ ସାହାଯ୍ୟ କରିବା । ତେଣୁ ତୁମ ରାଜ୍ୟରେ ଆଉ ଅଧିକ ଦିନ ରହିବା ମୋ ପକ୍ଷରେ ସମ୍ଭବ ନୁହେଁ । କିନ୍ତୁ ତା'ଙ୍କର ପ୍ରସ୍ଥାନକୁ ରାଜା ଆଦୌ ଗ୍ରହଣ କରିପାରୁ ନଥିଲେ । ରାଜାଙ୍କର ଅନୁରୋଧକୁ ରକ୍ଷା




କରି ସ୍ୱାମୀଜୀ ତାଙ୍କୁ କଥା ଦେଲେ ଯେ, ସେ ଯେଉଁଠାରେ ଥାଆନ୍ତୁ ନା' କାହିଁକି, ପ୍ରତି ତିନି ମାସରେ ଗୋଟିଏ ମାସ ସେ ପୁଷ୍ପନଗରରେ ବିତାଇବେ । ରାଜା ସୁଶାନ୍ତ ଏହା ଗ୍ରହଣ କଲେ ।

ତିନିମାସ ବିତିଗଲା । ଗୋଟିଏ ସନ୍ଧ୍ୟାବେଳେ ପ୍ରଜ୍ଞାନନ୍ଦ ପୁଷ୍ପନଗର ଫେରି ଆସିଲେ ଓ ତା'ଙ୍କ କୁଟୀରକୁ ଗଲେ । ସୁମଙ୍ଗଳ ତା'ଙ୍କର ଆଗମନକୁ ଲକ୍ଷ୍ୟ କରି ପାରିଲା ନାହିଁ । ସେତେବେଳକୁ ଅନ୍ଧାର ଘୋଟି ଆସିଥାଏ ଓ ସ୍ୱାମୀଜୀ ତୃଷାର୍ତ୍ତ ଅନୁଭବ କରୁଥିଲେ । ସେ ଉଦ୍ୟାନ ମଧ୍ୟରେ ଥିବା ପୁଷ୍କରିଣୀକୁ ଯାଇ ନିଜ ପାତ୍ରରେ କିଛି ଜଳ ଆଣିବାକୁ ସ୍ଥିର କଲେ । ସେ ଯେତେବେଳେ ପୁଷ୍କରିଣୀରେ ପାତ୍ରଟି ବୁଡାଇଛନ୍ତି, ସେଥିରୁ ବଡ ଜୋର୍‌ରେ କଳକଳ ଶବ୍ଦ ବାହାରିଲା ।

ପାଖରେ ଥିବା କୁଟୀରରେ ରହି ସୁମଙ୍ଗଳ ଏ [illegible] ଭାବିଲା, କିଛି ପଶୁ ଉଦ୍ୟାନ ଭିତରକୁ ପଶି ଆସିଛନ୍ତି ଓ ଏବେ ପୁଷ୍କରିଣୀ ପାଖରେ ଅଛନ୍ତି । ସେ ଅବିଳମ୍ୱେ ସେହି ଦିଗରେ ଧାଇଁ ଗଲା ଓ ଲକ୍ଷ୍ୟ କରି ବର୍ଛା ନିକ୍ଷେପ କଲା ।

ହାୟ ! ବର୍ଛା ସ୍ୱାମୀଜୀଙ୍କ ଶରୀରକୁ ଭେଦ କଲା ଓ ସେ ଉଚ୍ଚସ୍ୱରରେ ଚିତ୍କାର କରି ଗଡିଗଲେ । ସୁମଙ୍ଗଳ ତା'ଙ୍କ ସ୍ୱର ଶୁଣି ପାରିଲା ଓ ତାହା ସ୍ୱାମୀଜୀଙ୍କ ସ୍ୱର ବୋଲି ଚିହ୍ନି ପାରିଲା । ସେ ତାଙ୍କ ପାଦତଳେ ପଡିଯାଇ, କ୍ଷମାଭିକ୍ଷା କଲା । ସ୍ୱାମୀଜୀ କହିଲେ: "ମୋ ପିଠିରୁ ବର୍ଛା ବାହାର କରିଦିଅ । ଯାହା ଫଳରେ ମୁଁ ଶାନ୍ତିରେ ମୃତ୍ୟୁବରଣ କରିବି ।" କ୍ରନ୍ଦନରତ ସୁମଙ୍ଗଳ ତାହାହିଁ କଲା ଓ ସ୍ୱାମୀଜୀଙ୍କୁ ଧୀରେ ଭୂମି ଉପରେ ଶୁଆଇ ଦେଲା ।

"ମୋତେ କ୍ଷମା କରନ୍ତୁ । ମୁଁ ଜାଣିଶୁଣି ଏପରି କରି ନାହିଁ ।" କାନ୍ଦି କାନ୍ଦି ସୁମଙ୍ଗଳ କହିଲା ।

ସ୍ୱାମୀଜୀ ହସିଦେଲେ । "ମୁଁ ତାହା ଜାଣେ । ମୁଁ ତୁମକୁ କ୍ଷମା କରୁଛି ।" ଏବଂ ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ ।

ସେହିକ୍ଷଣି, ସୁମଙ୍ଗଳ ଭୟ ଓ ଆତଙ୍କରେ ଥରି ଉଠିଲା । ''ମୋର ଓ ମୋ ପରିବାରର କ'ଣ ହେବ ? ରାଜା ଏ କଥା ଶୁଣିଲେ ଆମକୁ ଜୀବନରେ ରଖିବେ ନାହିଁ ।'' ସେ ବିଚଳିତ ହୋଇ ଉଠିଲା । ତତ୍‌କ୍ଷଣାତ୍ କୁଟୀରକୁ ଯାଇ ନିଜ ସ୍ତ୍ରୀକୁ ସବୁ କଥା କହିଲା । ଦୁଇ ପୁଅଙ୍କୁ ଧରି ସେମାନେ ସେହି ରାତ୍ରିରୁ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ ।

ତା'ପରଦିନ ପ୍ରହରୀମାନେ ସ୍ୱାମୀଜୀଙ୍କ ମୃତ ଶରୀର ଉଦ୍ୟାନ ମଧ୍ୟରୁ ପାଇଲେ । ସେମାନେ ସୁମଙ୍ଗଳକୁ ଖୋଜିଲେ, ସେ ସେଠାରେ ମିଳିଲା ନାହିଁ । ସେମାନେ ଧରିନେଲେ ଯେ କୌଣସି କାରଣରୁ ସୁମଙ୍ଗଳ ସ୍ୱାମୀଜୀଙ୍କୁ ହତ୍ୟା କରିଛି ଓ ଫେରାର ହୋଇଯାଇଛି । ସେମାନେ ରାଜାଙ୍କୁ ଏହି ଦୁଃସମ୍ବାଦ ଶୁଣାଇଲେ ।

ଇତି ମଧ୍ୟରେ ସୁମଙ୍ଗଳ ପଡୋଶୀ ରାଜ୍ୟରେ ଗୋଟିଏ ଚାକିରି କରୁଥାଏ କିନ୍ତୁ ସେ ସେଠାରେ ଆଦୌ ସୁଖୀ ନ ଥାଏ । ସେ ପୁଷ୍ପନଗର ଫେରି ଆସିବାକୁ ଚାହୁଁଥାଏ । ଗୋଟିଏ ବର୍ଷ ବିତିଯିବା ପରେ, ସେ ପୁଷ୍ପନଗରକୁ ଗୋପନରେ ଆସି, ତା'ର ଜଣେ ପୁରାତନ ବନ୍ଧୁଙ୍କୁ ସାକ୍ଷାତ କଲା । ସେହି ବନ୍ଧୁ ରାଜାଙ୍କ ଦରବାରର ଜଣେ ପାରିଷଦ । ସେ ତାଙ୍କୁ ଅନୁରୋଧ ଜଣାଇଲା ଯେ, ସେ ରାଜାଙ୍କ ମନୋଭାବ ଲକ୍ଷ୍ୟ କରିବ, ରାଜା ତାଙ୍କୁ ସ୍ୱାମୀଜୀ ମୃତ୍ୟୁ ଅପରାଧରେ କ୍ଷମା କରିବେ କି ନାହିଁ ! ବନ୍ଧୁ ଜଣକ କଥା ରଖିଲେ ।

ଏହି ପ୍ରସଙ୍ଗ ରାଜାଙ୍କ ସମ୍ମୁଖରେ ଉଠାଇବା ପାଇଁ ଥରେ ଏକ ସୁଯୋଗ ମିଳିଲା । ରାଜଉଦ୍ୟାନର ରକ୍ଷକ ରାଜାଙ୍କୁ ଉଦ୍ୟାନରେ ଖର୍ଚ୍ଚ ହୋଇଥିବା କିଛି ଅର୍ଥର ହିସାବ ଦେଉଥାଏ । ପାରିଷଦ ହସ୍ତକ୍ଷେପ କରି କହିଲେ, ''ସୁମଙ୍ଗଳ ଖୁବ ଭଲ ଉଦ୍ୟାନରକ୍ଷକ ଥିଲା । ସେ ଏତେ ଅର୍ଥ



ବରବାଦ କରୁ ନଥିଲା ।''

ରାଜା କିଛି ଉତ୍ତର ଦେଲେ ନାହିଁ । ପାରିଷଦ ସୁମଙ୍ଗଳକୁ କିଛି ଦିନ ଅପେକ୍ଷା କରିବାକୁ କହିଲେ । ଛଅମାସ ପରେ, ସୁମଙ୍ଗଳର ଅନୁରୋଧ କ୍ରମେ, ପାରିଷଦ ପୁଣିଥରେ ରାଜାଙ୍କ ସମ୍ମୁଖରେ ତା' ସମ୍ବନ୍ଧରେ କହିଲେ । ଏଥର ମଧ୍ୟ, ରାଜା ନିରୁତ୍ତର ରହିଲେ ।

ପୁଣି ଛଅମାସ ବିତିଗଲା । ସୁମଙ୍ଗଳ ଖୁବ୍ ବିବ୍ରତ ଅନୁଭବ କଲା । ଏଥର ସେ ସିଧାସଳଖ ରାଜାଙ୍କୁ ରାଜଦରବାରରେ ଭେଟିଲା ଓ ତାଙ୍କ ପାଦତଳେ ପଡି ଯାଇ ସ୍ୱାମୀଜୀଙ୍କର ଅକାଳ ମୃତ୍ୟୁ ସମ୍ବନ୍ଧରେ ସବୁକଥା ଜଣାଇଲା ।

''ମୁଁ ସେ ସବୁ ଜାଣେ, ସୁମଙ୍ଗଳ । ମୁଁ ଜାଣେ ତୁମେ କୌଣସି ଅଭିସନ୍ଧି ରଖି ଏପରି କର୍ମ ଆଦୌ କରିନାହଁ । ଏବେ ତୁମେ ରାଜ୍ୟକୁ ଫେରି ଆସ ଓ ତୁମ ପୁରୁଣା କାମରେ ଯୋଗ ଦିଅ ।'' ରାଜା

ନିର୍ଭରବାଣୀ ଶୁଣାଇଲେ ।

ବେତାଳ ଏହିଠାରେ କାହାଣୀ ବନ୍ଦ କରି ରାଜାଙ୍କୁ ପ୍ରଶ୍ନ କଲା, ''ହେ ରାଜନ୍ ! ଯେତେବେଳେ ସୁମଙ୍ଗଳର ବନ୍ଧୁ ଉଦ୍ୟାନରକ୍ଷକକୁ ପ୍ରଶଂସା କରି ରାଜାଙ୍କ ଦରବାରରେ ପ୍ରଥମ ଦୁଇଥର ପ୍ରସଙ୍ଗ ଉଠାଇଲେ, ରାଜା ସେଥିପ୍ରତି କୌଣସି ପ୍ରତିକ୍ରିୟା ପ୍ରକାଶ କଲେ ନାହିଁ. କିନ୍ତୁ ଯେତେବେଳେ ସୁମଙ୍ଗଳ ନିଜେ ରାଜାଙ୍କୁ ଭେଟିଲା ଓ ଦୁଇବର୍ଷ ପରେ ସ୍ୱାମୀଜୀଙ୍କ ଆକସ୍ମିକ ମୃତ୍ୟୁର କାରଣ ରାଜାଙ୍କୁ ବର୍ଣ୍ଣନା କଲା, ରାଜା ତା'କୁ ପୁଣି ଗ୍ରହଣ କରିନେଲେ । ରାଜାଙ୍କର ଏପରି ବ୍ୟବହାର ଅସଂଗତ ମନେ ହେଉ ନାହିଁ କି ? ତୁମେ କ'ଣ ଭାବୁଛ ଯେ, ରାଜା ଯେତେବେଳେ ସୁମଙ୍ଗଳକୁ ଦେଖିଲେ, ସେତେବେଳେ ଯାଇ ସେ ହୃଦୟଙ୍ଗମ କଲେ ଯେ, ସେ ସ୍ୱାମୀ ପ୍ରଜ୍ଞାନନ୍ଦଙ୍କ ଉଦ୍ଦେଶ୍ୟମୂଳକ ଭାବେ ହତ୍ୟା କରି ନ ଥିବ ? ମୋ ପ୍ରଶ୍ନର ଉତ୍ତର ଜାଣି ସୁଦ୍ଧା ନୀରବ ରହିଲେ ତୁମର ମସ୍ତକ ଶତଧା ବିଦୀର୍ଣ୍ଣ ହେବ ।

ଅବିଳମ୍ବେ ରାଜା ବିକ୍ରମ ଉତ୍ତର ଦେଲେ, ନା, ରାଜା ସୁଶାନ୍ତଙ୍କ ବ୍ୟବହାରରେ କୌଣସି ଅସଂଗତି ନାହିଁ । ସେ ବହୁ ପୂର୍ବରୁ ଜାଣି ସାରିଥିଲେ ଯେ ସ୍ୱାମୀଜୀଙ୍କ ମୃତ୍ୟୁ ଏକ ଆକସ୍ମିକ ଦୁର୍ଘଟଣା, ଏକ ଉଦ୍ଦେଶ୍ୟମୂଳକ ଷଡଯନ୍ତ୍ର ନୁହେଁ । କାରଣ ତୁମେ ହିଁ ତ ପ୍ରଥମରୁ କହିଥିଲ ଯେ, ସେ ଜଣେ ଜ୍ଞାନୀ ଶାସକ । ସେ ତା'ଙ୍କ ଉଦ୍ୟାନ-ରକ୍ଷକକୁ ଭଲ ଭାବେ ଜାଣିଥିଲେ । ଯଦିଓ ସେ ଜଣେ ଘାତକକୁ ସୁମଙ୍ଗଳକୁ ଧରି ଆଣିବା ପାଇଁ ଆଦେଶ ଦେଇଥିଲେ, ତାହା ଥିଲା ତା'ଙ୍କ ପ୍ରଚଣ୍ଡ କ୍ରୋଧର ପରିଣାମ । ସ୍ୱାମୀଜୀ ଥରେ ତା'ଙ୍କୁ ଆଦେଶ ଦେଇଥିଲେ, କ୍ରୋଧପରବଶ ହୋଇ କୌଣସି ନିଷ୍ପତ୍ତି ନନେବା ଉଚିତ । କିନ୍ତୁ ସେ ସାଧୁଙ୍କ ଉପଦେଶ ମନେପକାଇ ନୀରବ ରହୁଥିଲେ । କାରଣ ତା'ଙ୍କ ମନରେ ଭୟଥିଲା, ଯଦି ସୁମଙ୍ଗଳ ତା'ଙ୍କ ସମ୍ମୁଖକୁ ଆସିଯାଏ. ସେ ହୁଏତ ତାକୁ କଠୋର ଦଣ୍ଡରେ ଦଣ୍ଡିତ କରିବେ । ଦୁଇ ବର୍ଷପରେ, ସମୟ ଦୁର୍ଘଟଣାର କ୍ଷତକୁ ଲାଘବ କରି ସାରିଥିଲା । ସୁମଙ୍ଗଳ ନିଜ ତରଫରୁ ଦରବାରରେ ଉପସ୍ଥିତ ହୋଇ କ୍ଷମା ପ୍ରାର୍ଥନା କଲା । ଏବଂ ରାଜା ନିଜ ବୁଦ୍ଧିମତ୍ତାର ପରିଚୟ ଦେଇ ପ୍ରତିକ୍ରିୟା ପ୍ରକାଶ କଲେ । ଏହା ତାଙ୍କର ଅଦ୍‌ଭୁତ ନୀରବତା ନୁହେଁ ।''

ରାଜାଙ୍କ ମୌନ ଭଙ୍ଗ ହେବାମାତ୍ରେ ବେତାଳ ଶବ ସହିତ ରାଜାଙ୍କ କାନ୍ଧରୁ ଅର୍ନ୍ତହିତ ହୋଇ ବୃକ୍ଷରେ ଝୁଲିପଡିଲା ।





# ବିଘ୍ନେଶ୍ୱର

ସତ୍ୟଲୋକରେ କମଳାସନରେ ବସି ବ୍ରହ୍ମା ସୃଷ୍ଟି କର୍ମରେ ବ୍ୟାପୃତ ରହି କ୍ଳାନ୍ତହୋଇ ପଡ଼ିଲେ । ଯେତେବେଳେ ଗୋଟିଏ କଳ୍ପ ଶେଷ ହେବାକୁ ବସିଲା, ସେତେବେଳେ ତାଙ୍କୁ ନିଦ୍ରା ଆଚ୍ଛନ୍ନ କଲା । ଯେତେବେଳେ ନିଦ୍ରା- ବଶରେ ବ୍ରହ୍ମାଙ୍କ ଆଖି ମୁଦି ହୋଇ ଆସିଲା, ସେତେବେଳେ ଆକାଶରେ କଳାମେଘ ଘୋଟି ଆସିଲା ଏବଂ ଅବିରତ ବର୍ଷା ହେବାକୁ ଲାଗିଲା । କ୍ରମେ ସାରା ଧରା ଜଳମଗ୍ନ ହେବାକୁ ବସିଲା । ଯେତେବେଳେ ବ୍ରହ୍ମା ପୁରାପୁରି ନିଦ୍ରାମଗ୍ନ ହେଲେ, ସେତେବେଳେ ଚତୁର୍ଦ୍ଦିଗ ଅନ୍ଧକାରାଚ୍ଛନ୍ନ ହେଲା ।

ସେହି ପ୍ରଳୟ ଅବସ୍ଥା ଭିତରେହିଁ ବ୍ରହ୍ମା ଶୋଇ ରହିଲେ । ପ୍ରଳୟ କାଳହିଁ ତାଙ୍କ ସକାଶେ ରାତ୍ରି । କ୍ରମେ ନୂତନ କଳ୍ପ ଆରମ୍ଭ ହେବାର ସମୟ ହେଲା । ଚତୁର୍ଦ୍ଦିଗରୁ ଅମାଅନ୍ଧକାର ଦୂରୀଭୂତ ହେଲା ଏବଂ କ୍ରମେ ଆଲୋକର ଆଭା ଫୁଟି ଉଠିଲା । ଯେତେବେଳେ ଦେବୀ ସରସ୍ୱତୀ ବୀଣାର ଝଙ୍କାର ତୋଳିଲେ, ସେତେବେଳେ ବ୍ରହ୍ମାଙ୍କ ନିଦ୍ରା ଦୂରୀଭୂତ ହେଲା ।

ପଦ୍ମାସନରେ ବସି ଚର୍ତୁମୁଖ ବ୍ରହ୍ମା ଦଶ ଦିଗକୁ ଦୃଷ୍ଟିପାତ କଲେ ।

ନିମ୍ନଦେଶରେ ଅସୀମ ସମୁଦ୍ରରେ ପ୍ରଚଣ୍ଡ ଲହରୀମାଳା ଖେଳୁଥାଏ । ସେହି ଲହରୀମାଳା ଭିତରେ ଗୋଟିଏ ସ୍ଥଳ ଉଜ୍ଜ୍ୱଳ ଦିଶୁଥାଏ । ବ୍ରହ୍ମା ଲକ୍ଷ୍ୟକରି ଦେଖିଲେ, ସେ ଜ୍ୟୋତି ଗୋଟିଏ ଶିଶୁ ଦେହରୁ ବିଚ୍ଛୁରିତ ହେଉଛି । ଶିଶୁଟି ଏକ ଭାସମାନ ବଟପତ୍ର ଉପରେ ଶୋଇ ରହି ହାତଗୋଡ଼ ହଲାଇ ଖେଳୁଛି ।

ବ୍ରହ୍ମା ନୟନ ମୁଦ୍ରିତ କରି ଧ୍ୟାନସ୍ଥ ହେଲେ ଓ ସେ ଶିଶୁଟି କିଏ ତାହା ନିର୍ଣ୍ଣୟ କରିବାକୁ ଚେଷ୍ଟା କଲେ ।

ସେ ଜାଣି ପାରିଲେ, ସେ ଶିଶୁଟି ଆଉ କେହି ନୁହେଁ, ବ୍ରହ୍ମ ର ଏକ ରୂପ । ବାହାରର ଆକାର ଅନୁସାରେ ସେ ଶିଶୁର ମୁଣ୍ଡ ହାତୀପରି ।

ବ୍ରହ୍ମା ଗଭୀର କୌତୁହଳ ସହକାରେ ଶିଶୁଟିକୁ ଦେଖୁଥାନ୍ତି । ତା' ବଦନମଣ୍ଡଳ ଚନ୍ଦ୍ରମା ଭଳି



ଦୃଷ୍ଟି ନଥାଏ । ଦେବୀ ସରସ୍ୱତୀ ଏକାଗ୍ର ଭାବରେ ବୀଣାବାଦନ କରି ଚାଲିଥାନ୍ତି । କେତେ କାଳ ବିତିଗଲା ।

ପୁନର୍ବାର କୌଣସି ଅଭିନବ ସୃଷ୍ଟିର ସଂକଳ୍ପ କରି ସେ କମଣ୍ଡଳୁରୁ ଜଳ ନେଇ ସିଞ୍ଚନ କଲେ । ଫଳରେ ଆବିର୍ଭୂତ ହେଲା ମଣିଷ ।

ଯେତେବେଳେ ବ୍ରହ୍ମା ସୃଷ୍ଟି କାର୍ଯ୍ୟରେ ବ୍ୟାପୃତ, ସେତେବେଳେ ଦେବୀ ସରସ୍ୱତୀ ବୀଣା ବାଦନ କରୁଥାନ୍ତି । ହଠାତ୍ ବୋଧହୁଏ ଦେବୀଙ୍କ ଅନ୍ୟମନସ୍କତା ଯୋଗୁଁ ବୀଣାରୁ ନିର୍ଗତ ହେଲା ଭୁଲ୍ ସ୍ୱର । ଦେବୀ ଆଶ୍ଚର୍ଯ୍ୟ ହୋଇ ତଳକୁ ଦେଖିଲେ । ଦେବୀ ତଳକୁ ଦେଖୁଥିବାର ଲକ୍ଷ୍ୟ କରି ବ୍ରହ୍ମା ମଧ୍ୟ ତାହାହିଁ କଲେ । ସେ ଦେଖିଲେ ଏକ ବିଚିତ୍ର ଦୃଶ୍ୟ । ପର୍ବତମାନଙ୍କ ଶିଖର ଦେଶ ଅଧୋଗାମୀ ହୋଇ ରହିଛନ୍ତି । ସେମାନଙ୍କ ମୂଳ ଉପରକୁ ରହି ଛତାଭଳି ବଢୁଛନ୍ତି ଏବଂ ସୂର୍ଯ୍ୟଙ୍କ ଗତିରେ ବାଧା ଦେଉଛନ୍ତି । ନଦୀମାନେ ସମୁଦ୍ରରୁ ବାହାରି ଉଚ୍ଚ ସ୍ଥାନ ଆଡ଼କୁ ମାଡ଼ି ଚାଲିଛନ୍ତି । ବୃକ୍ଷମାନଙ୍କ ଶୀର୍ଷ ଦେଶ ବି ତଳକୁ ଚେର ମୂଳ ଉପରକୁ । ଜଳଚର ଜୀବମାନେ ସ୍ଥଳରେ ନାଚକୁଦ କରୁଛନ୍ତି । କେତେକ ମତ୍ସ୍ୟ ପକ୍ଷୀ ଭଳି ଉଡୁଛନ୍ତି ।

ପଶୁମାନଙ୍କ ଅବସ୍ଥା ହୋଇଥାଏ ନିହାତି ବିକୃତ । କୌଣସି କୌଣସି ପଶୁଙ୍କ ଶୀର ନ ଥାଏ । କିଛି ପଶୁଙ୍କର ବା ପଶ୍ଚାଦ୍‌ଭାଗ ନ ଥାଏ । କାହାର ବା ଗୋଟାଏ ଗୋଡ, କାହାର ତିନୋଟି । କାହାର ମୁହଁ ଅଛି ତ ଆଖି କାନ ନାହିଁ । ଆଉ କାହାର ଆଖି କାନ ଅଛି, ମୁହଁ ନାହିଁ । କେତେକ ପଶୁଙ୍କ ମୁଣ୍ଡରୁ ଲାଞ୍ଜ ଗଜୁରିଥାଏ । କାହାର ବା ଲାଞ୍ଜରୁ ମୁଣ୍ଡ ଓହଳିଥାଏ । କୌଣସି କୌଣସି ପକ୍ଷୀଙ୍କର ମୋଟେ ପର ନ ଥାଏ ।

ବ୍ରହ୍ମା ଅତ୍ୟନ୍ତ ଚିନ୍ତିତ ହୋଇ ନିଜର ସର୍ବଶ୍ରେଷ୍ଠ

ଦ୍ୟୁତିମାନ୍ । ତା'ର ଥାଏ ଚାରି ହାତ । କିନ୍ତୁ ବ୍ରହ୍ମା ଲକ୍ଷ୍ୟ କରୁ କରୁ ହଠାତ୍ ଶିଶୁଟି ଅଦୃଶ୍ୟ ହୋଇଗଲା । ସେଠାରେ ଦେଖାଦେଲା ଗୋଟାଏ ମାଟି ଢ଼ିପ ।

କ୍ରମେ ସେହି ଆଦିଗନ୍ତ ଜଳରାଶି ଭିତରୁ ସ୍ଥଳଭାଗ ଉତ୍ପନ୍ନ ହେଲା । ସ୍ଥଳର ଏକ ପ୍ରାନ୍ତରେ ରହିଲା ସମୁଦ୍ର ।

ବ୍ରହ୍ମା ସୃଷ୍ଟି ରଚନାରେ ମନୋନିବେଶ କଲେ । ସେ ପ୍ରଥମେ ନଦୀ ଏବଂ ପର୍ବତ ସୃଷ୍ଟିର କଳନା କରି ନିଜ କମଣ୍ଡଳୁରୁ ଟିକିଏ ପାଣି ନେଇ ଭୂଭାଗ ଉପରେ ସିଞ୍ଚନ କଲେ । ତା'ପରେ ସେ ସୃଷ୍ଟି କଲେ ବୃକ୍ଷଲତା । ପରେ ପରେ ସମୁଦ୍ରରେ ମତ୍ସ୍ୟାଦି ପ୍ରାଣୀ ସୃଜନ କରି ସ୍ଥଳ ଭାଗରେ ପଶୁପକ୍ଷୀ ଏବଂ ନାନାଦି କୃମିକୀଟ ସୃଷ୍ଟି କଲେ ।

ବ୍ରହ୍ମା ଆତ୍ମସ୍ଥ ହୋଇ ଏକ ପରେ ଏକ ପର୍ଯ୍ୟାୟ ସୃଷ୍ଟି କରି ଚାଲିଥାନ୍ତି । ତାଙ୍କର ଅନ୍ୟ କେଉଁଠି

ସୃଷ୍ଟି ମଣିଷ ଆଡ଼କୁ ଦୃଷ୍ଟି ଦେଲେ ।

ସେ ଦେଖିଲେ କୌଣସି କୌଣସି ମଣିଷଙ୍କ କାନ୍ଧରେ ଦୁଇ ଦୁଇଟା ମୁଣ୍ଡ । ଗୋଟାଏ ପୁରୁଷ ମୁଣ୍ଡ ତ ଅନ୍ୟଟି ନାରୀ ମୁଣ୍ଡ । ସେମାନଙ୍କ ଚେହେରାରେ କୌଣସି ସଂହତି ନଥାଏ । କିଏ ଅତି ଛୋଟ ତ କିଏ ହାତୀ ଭଳି ବିଶାଳ । ପୁଣି ଅନେକଙ୍କର ପେଟରେ ମୁଣ୍ଡ । କାହାର ବା ଜମାରୁ ମୁଣ୍ଡ ନ ଥାଏ । ଗୋଡ଼ ହାତ କ୍ଷେତ୍ରରେ ମଧ୍ୟ କୌଣସି ନିୟମ ନଥାଏ । କାହାର ଗୋଟାଏ ହାତ ଥାଏ ତ କାହାର ତିନୋଟି ।

ସେ ବିକୃତ ମାନବମାନେ ନାଚୁଥାନ୍ତି ଓ ନାନାଦି ବିକଟ ଧ୍ୱନି କରି ବ୍ରହ୍ମାଙ୍କର ନିନ୍ଦା କରୁଥାନ୍ତି ।

ଜଣେ ଅତି ଦୟନୀୟ ଆକୃତିର ପୁରୁଷ ତାଳଗଛ ଭଳି ଜଣେ ନାରୀକୁ ଦେଖାଇ ଉପରକୁ ଅନାଇ ଚିତ୍କାର କରି କହିଲା, ''ବ୍ରହ୍ମଦେବ ! ଏଭଳି ଜଣେ ନାରୀକୁ ନେଇ ମୁଁ ସଂସାର କରିବି କିପରି ?''

କେତେଜଣ ଅପୂର୍ଣ୍ଣ ଓ ଅପରିଣତ ଅଙ୍ଗ ସର୍ବସ୍ୱ ଲୋକ  କାନ୍ଦି କାନ୍ଦି ବ୍ରହ୍ମାଙ୍କୁ ଭର୍ତ୍ସନା କରୁଥାନ୍ତି ଏବଂ କହୁଥାନ୍ତି, ''ହେ ବ୍ରହ୍ମଦେବ ! ଆପଣଙ୍କର ଚାରିଗୋଟି ଶୀର ଅଛି ବୋଲି ଆମେ ଜାଣିଛୁ । କିନ୍ତୁ ଏତେ ଗୁଡ଼ିଏ ଶୀର ଥିବାସତ୍ତ୍ୱେ ବୁଦ୍ଧି ବିବେକ କିଛି ଅଛି ବୋଲି ମନେ ହେଉନାହିଁ । ଆମକୁ ଏଭଳି ଅସଙ୍ଗତ ରୂପ ଦେଲେ କିପରି ?''

ସେସବୁ ଚିତ୍କାର ଏବଂ ଆର୍ତ୍ତନାଦ ଶୁଣି ବାସ୍ତବିକ ବ୍ରହ୍ମାଙ୍କର ଚାରି ମୁଣ୍ଡଯାକ ବୁଲାଇଦେଲା । ଚାରି ଯୋଡ଼ା ଆଖିରେ ସେ ଅନ୍ଧକାର ଦେଖିଲେ । ସେ କିଂକର୍ତ୍ତବ୍ୟବିମୂଢ଼ ଦୃଷ୍ଟିରେ ଦେବୀ ସରସ୍ୱତୀଙ୍କ ଆଡ଼କୁ ଅନାଇବାରୁ ଦେବୀ କିଛି ନ କହି ଅଳ୍ପ ଟିକିଏ ହସିଦେଲେ ।



ବ୍ରହ୍ମା ନୀରବରେ ଚିନ୍ତା କରୁଥିଲେ କିନ୍ତୁ ହଠାତ୍ ଉଚ୍ଚକଣ୍ଠରେ ସେ ଏହି ପ୍ରଶ୍ନ ପଚାରିଲେ, ''ମୋ ସୃଷ୍ଟି ସଂହତ ଏବଂ ସୁସଜ୍ଜିତ ହେଉ, ଏହି କାମନା କରିଥିଲି । କିନ୍ତୁ ଏପରି ହେଲା କିପରି ?''

ବ୍ରହ୍ମାଙ୍କର ସେ ବ୍ୟାକୁଳ ପ୍ରଶ୍ନ ଦଶ ଦିଗରେ ଗୁଞ୍ଜରିତ ହେଲା । ଚାହୁଁ ଚାହୁଁ ଅଦୂରରେ ଫୁଟି ଉଠିଲା ଏକ ଅପୂର୍ବ ସୁନ୍ଦର ଦୃଶ୍ୟ । ବ୍ରହ୍ମା ଜଣେ ଦିବ୍ୟକାନ୍ତି ପୁରୁଷଙ୍କୁ ଦେଖିଲେ । ତାଙ୍କର ଚାରି ହାତ । ସ୍କନ୍ଧ ଦେଶରେ ହାତୀ ଶୀର । କ୍ରମେ ସେ ଚାରି ହାତ ପାଶ, ଅଙ୍କୁଶ, କଳଶ ଏବଂ ପରଶୁ ଧାରଣ କଲା ।

ସେ ଦିବ୍ୟ ପୁରୁଷଙ୍କ ଜ୍ୟୋତିରେ ଦିଗ୍‌ବଳୟ ଉଦ୍‌ଭାସିତ ହେଉଥିଲା । ତାଙ୍କ ଶୁଭ୍ର ଉତ୍ତରୀୟ ଗଗନ ବ୍ୟାପି ଫର୍‌ଫର୍ ହୋଇ ଉଡୁଥିଲା ।

ସରସ୍ୱତୀ ବୀଣା ବାଦନ ଆରମ୍ଭ କଲେ । ସେ ବୀଣାର ଅପୂର୍ବ ଝଙ୍କାରରେ ଚତୁର୍ଦ୍ଦିଗରେ ପରମ



ଶାନ୍ତି ଓ ଗାମ୍ଭୀର୍ଯ୍ୟ ସୃଷ୍ଟି ହେଲା ।

ଗଜାନନ ରୂପୀ ସେହି ଦିବ୍ୟ ରୂପ ଅଭୟ ମୁଦ୍ରା ଦ୍ୱାରା ବ୍ରହ୍ମାଙ୍କୁ ଆଶ୍ୱାସନା ଦେଲେ ।

ବ୍ରହ୍ମା ତାଙ୍କୁ ଅଭିବାଦନ ଜଣାଇ ପଚାରିଲେ, ''ହେ ମହାନ୍ ! ଆପଣଙ୍କ ପରିଚୟ କ'ଣ ? ଏହି ମୁହୂର୍ତ୍ତରେ ମୁଁ କିଛି ବୁଝିପାରିବା ଭଳି ସ୍ଥିତିରେ ନାହିଁ । ଅନୁଗ୍ରହ କରି ଆପଣ ମୋତେ ଆପଣଙ୍କ ପରିଚୟ ପ୍ରଦାନ କରନ୍ତୁ ।''

''ବ୍ରହ୍ମଦେବ ! ସଂକଳ୍ପକୁ ସର୍ବଦା ବିକଳ୍ପ ଅନୁସରଣ କରୁଥାଏ । ସେହି ବିକଳ୍ପ ବା ବିଘ୍ନକୁ ହଟାଇ ସଂକଳ୍ପ ସିଦ୍ଧ କରାଇବା ମୋର ଭୂମିକା । ମୁଁ ବିଘ୍ନେଶ୍ୱର । ବିଘ୍ନକାରୀ ଶକ୍ତିମାନଙ୍କୁ ମୋର ପରଶୁ ପ୍ରତିହତ କରେ ।

ପ୍ରତି କାର୍ଯ୍ୟ ମୋ ସହାୟତାରେ ପୂର୍ଣ୍ଣ କଳସ ଭଳି ପୂର୍ଣ୍ଣତା ପ୍ରାପ୍ତ ହୋଇଥାଏ । ଦୁଷ୍ଟ ଶକ୍ତିମାନଙ୍କୁ ମୁଁ ପାଶ ଦ୍ୱାରା ବନ୍ଦୀ କରିଥାଏ । ଖାଦ୍ୟ ପଦାର୍ଥ ଓ ଶସ୍ୟଧ୍ୱଂସ କରୁଥିବା ମତ୍ତହସ୍ତୀ ରୂପକ ଶକ୍ତିରାଶିକୁ ମୁଁ ମୋ ଅଙ୍କୁଶ ଦ୍ୱାରା ବଶୀଭୂତ କରାଇଥାଏ । ପଞ୍ଚଭୂତ ରୂପେ ବିଖ୍ୟାତ ପୃଥ୍ୱୀ, ଜଳ, ବାୟୁ, ଅଗ୍ନି ଏବଂ ଆକାଶ, ଏହି ଭୂତଗଣଙ୍କ ଅଧିପତି ରୂପେ ମୋର ନାମ ଗଣପତି । ଭବିଷ୍ୟତରେ ମୋତେ ଆପଣ ବିଘ୍ନେଶ୍ୱର ରୂପେ ସମ୍ବୋଧନ କରିପାରନ୍ତି ।'' ଜଣାଇଲେ ବିଘ୍ନେଶ୍ୱର ।

ବ୍ରହ୍ମା କହିଲେ, ''ହେ ଦେବ, ବିଘ୍ନେଶ୍ୱର ! ମୋ ସୃଷ୍ଟିରେ ଏଭଳି ବିଘ୍ନ କାହୁଁ ଆସି ଉପସ୍ଥିତ ହେଲା ? ଦୟାକରି ମୋ ସୃଷ୍ଟି କିପରି ସଂହତ ହୋଇ ପାରିବ, ସେ ଦିଗରେ ମୋତେ ପଥ ପ୍ରଦର୍ଶନ କରନ୍ତୁ ।'' ବିଘ୍ନ ସମ୍ପର୍କରେ ଆପଣ ସଚେତନ ହେବା ଆବଶ୍ୟକ ବୋଲି ଏସବୁ ଘଟିଛି । ପ୍ରଥମରୁ ମୁଁ ଆପଣଙ୍କୁ ବଟପତ୍ରରେ ଶାୟିତ ଶିଶୁ ରୂପେ ଦର୍ଶନ ଦେଇଥିଲି । ସେତିକିବେଳେ ଆପଣ ମୋ ଉପରେ ଯଥାର୍ଥ ଧ୍ୟାନ ଦେବା ଉଚିତ ଥିଲା । ସେତେବେଳେ ସେଭଳି ଧ୍ୟାନ ଦେଇଥିଲେ ବିଘ୍ନ ସମ୍ପର୍କରେ ଆପଣଙ୍କର ବଳେ ବଳେ ଜ୍ଞାନ ହୋଇ ଯାଇଥାନ୍ତା । ଆପଣ ସତର୍କ ହୋଇ ପାରିଥାନ୍ତେ । ମୁଁ ସେହି ଜ୍ଞାନର ସ୍ୱରୂପ । ଆପଣ ତଥା ଅନ୍ୟ ସମସ୍ତେ ଯେ କୌଣସି କାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ ସେ କାର୍ଯ୍ୟରେ କିଭଳି ବାଧାବିଘ୍ନ ଦେଖାଦେବା ସମ୍ଭବ, ସେ ବିଷୟରେ ଅବହିତ ହେବା ଆବଶ୍ୟକ । କାର୍ଯ୍ୟରେ ଶୁଭ ଓ ସଫଳତାର ତାହା ମାର୍ଗ । ହାତୀ ଆଗକୁ ବଢ଼ିବା ପୂର୍ବରୁ ସନ୍ତର୍ପଣରେ ଗୋଡ଼ ଥାପି ମାଟିର ଶକ୍ତି ପରୀକ୍ଷା କରିନିଏ । ଜୀବ ସୃଷ୍ଟିରେ ହାତୀହିଁ ସବୁଠାରୁ ବିଶାଳ ଓ ବିବେକବାନ ପ୍ରାଣୀ । ଯେହେତୁ ଜୀବମାନଙ୍କୁ ବିଘ୍ନରୁ ରକ୍ଷା କରିବା ମୋର କାର୍ଯ୍ୟ, ତେଣୁ ମୁଁ ସର୍ବଦା ଜୀବଜଗତର ନିକଟବର୍ତ୍ତୀ । ସେହି ସଙ୍କେତ ରୂପେ ମୁଁ ହାତୀର ଶୀରକୁ ନିଜ ଶୀର ରୂପେ

ଗ୍ରହଣ କରିଛି । ଆପଣ ବର୍ତ୍ତମାନ ତାହା ମୋ ପାଖରୁ ଗ୍ରହଣ କରନ୍ତୁ ।'' ଏହା କହି ବିଘ୍ନେଶ୍ୱର ବ୍ରହ୍ମାଙ୍କୁ ବେଦ ସମର୍ପଣ କଲେ ।

ବେଦ ଗ୍ରହଣ କରି ବ୍ରହ୍ମା ପରମ ପ୍ରସନ୍ନ ହେଲେ । ସେ କରଯୋଡ଼ି କହିଲେ, ''ହେ ବିଘ୍ନେଶ୍ୱର ! ଯେ କୌଣସି ସୃଷ୍ଟିର ଆରମ୍ଭରେ ମୁଁ ଯେପରି ଆପଣଙ୍କୁ ସ୍ମରଣ କରିପାରିବି ଏବଂ ତାହା ଦ୍ୱାରା ବିଘ୍ନର ସମ୍ଭାବନାକୁ ପ୍ରତିହତ କରି କାର୍ଯ୍ୟରେ ପ୍ରବୃତ୍ତ ହୋଇପାରିବି, ମୋତେ ଏହି ବର ଦିଅନ୍ତୁ । ତାହା ନକରି ସୃଷ୍ଟି କାର୍ଯ୍ୟରେ ମନୋନିବେଶ କରିଥିବା ହେତୁ ଯେଉଁ ବିକୃତ ସୃଷ୍ଟି ସମ୍ଭବ ହୋଇଛି, ତାହା କିପରି ସ୍ୱପ୍ନ ଭଳି ଉଭେଇ ଯିବ, ସେ ବ୍ୟବସ୍ଥା କରିଦିଅନ୍ତୁ ।''

ବିଘ୍ନେଶ୍ୱରଙ୍କ କୃପାରୁ ସେ ଅସଙ୍ଗତ ସୃଷ୍ଟି ନିମିଷକେ ଅଦୃଶ୍ୟ ହୋଇଗଲା । ତା'ପରେ ବିଘ୍ନେଶ୍ୱର ପୁନର୍ବାର ବ୍ରହ୍ମାଙ୍କୁ କହିଲେ, ''ବ୍ରହ୍ମଦେବ ! ନୂତନ ସୃଷ୍ଟିର ପ୍ରାରମ୍ଭରେ ମୋତେ ସ୍ମରଣ କଲେ ମୁଁ ଆପଣଙ୍କର ସହାୟକ ହେବି । ନୂତନ ସୃଷ୍ଟି ଶୁଭ ହେଉ । ଆପଣଙ୍କ ସୃଷ୍ଟି ଜଗତର ମାନବଗଣ ଯେପରି ନିଜ ନିଜ କାର୍ଯ୍ୟର ପୂର୍ଣ୍ଣତା ଓ ସାଫଲ୍ୟ ଦିଗରେ ସହାୟତା ଲାଭ କରିପାରିବେ, ସେଥିପାଇଁ ମୁଁ ଯଥାସମୟରେ ଶିବ ପାର୍ବତୀଙ୍କ ନନ୍ଦନ ରୂପେ ରୂପ ପରିଗ୍ରହଣ କରିବି । ମୁଁ ସମସ୍ତଙ୍କୁ ବିଘ୍ନରୁ ରକ୍ଷା କରିବି । ବିନାୟକ ରୂପେ ସେମାନଙ୍କ ସଂକଳ୍ପ ସିଦ୍ଧି କରାଇବି ।''

ପୁଣି ଥରେ ବ୍ରହ୍ମାଙ୍କୁ ଆଶୀଷ ଦେଇ ସେ ଦିବ୍ୟମୂର୍ତ୍ତି ଅଦୃଶ୍ୟ ହୋଇଗଲା ।

ଦେବୀ ସରସ୍ୱତୀଙ୍କ ବୀଣାରୁ ମଙ୍ଗଳମୟ ସ୍ୱର ନିର୍ଗତ ହେଲା । ସେ ସ୍ୱର ଦୂର ଦୂରାନ୍ତରକୁ ବ୍ୟାପି ଗଲା ଏବଂ ସମଗ୍ର ଆକାଶ ପୁଲକିତ ହୋଇ ଉଠିଲା ।

ବ୍ରହ୍ମଦେବ ଏହାପରେ ''ଓଁ ବିଘ୍ନେଶ୍ୱରାୟ ନମଃ'' ବୋଲି ଉଚ୍ଚାରଣ କରି ପୁନର୍ବାର ସୃଷ୍ଟି କାର୍ଯ୍ୟରେ ମନୋନିବେଶ କଲେ ।

ଚାହୁଁ ଚାହୁଁ ପୃଥିବୀରେ କଳକଳନାଦିନୀ ନଦୀମାନ ପ୍ରବାହିତ ହେଲେ । ନାନାଦି ବୃକ୍ଷଲତା ଶୋଭିତ ପାହାଡ଼ ପର୍ବତମାନଙ୍କ ଉଦ୍ଭବ ହେଲା । କେତେ ଜାତିର ପ୍ରାଣୀ ସୃଷ୍ଟି ହେଲେ । ଦେବୀ ସରସ୍ୱତୀଙ୍କ ବୀଣା ନାଦରେ ଅନୁପ୍ରାଣିତ ହୋଇ ମଣିଷ ଭିତରେ କଳା ପ୍ରତି ଅନୁରାଗର ସଞ୍ଚାର ହେଲା । ପୃଥିବୀର ସବୁ ବିଭବରେ ସଂହତି ଓ ସାମଞ୍ଜସ୍ୟ ପରିଲକ୍ଷିତ ହେଲା ।



# ସମ୍ବାଦ ବିଚିତ୍ରା

## ନକ୍ଷତ୍ର ଅରଣ୍ୟ




ହିନ୍ଦୁ ଗଣନା ଅନୁଯାୟୀ ଅଶ୍ୱିନୀଠାରୁ ରେବତୀ ପର୍ଯ୍ୟନ୍ତ ସତେଇଶଟି ନକ୍ଷତ୍ର ଅଛି । ପ୍ରତ୍ୟେକ ହିନ୍ଦୁ ଏଥି ମଧ୍ୟରୁ କୌଣସି ଗୋଟିଏ ନକ୍ଷତ୍ର ବେଳାରେ ଜନ୍ମ ଗ୍ରହଣ କରିଥାନ୍ତି ବୋଲି ମନେ କରାଯାଏ । ଏହି ସତେଇଶ ଗୋଟି ତାରକା ସହିତ ଫୁଲ, ପଶୁ, ପକ୍ଷୀ କିମ୍ବା ଗୋଟିଏ ବୃକ୍ଷର ସମ୍ପର୍କ ରହିଛି । ତାମିଲନାଡୁର କୋଏମ୍ବାଟୁରଠାରେ ଥିବା, ବେଦିକ୍ ଇଣ୍ଡିଆ ସୋସାଇଟି, ଉଟକାମଣ୍ଡ ଯିବା ବାଟରେ ପଡୁଥିବା ମେଟ୍ଟୁପାଲାୟମ୍ ନିକଟରେ ଥିବା ଏକ ବିଦ୍ୟାଳୟକୁ ମନୋନୀତ କରିଛନ୍ତି ଓ ଏହାର ଛାତ୍ରମାନଙ୍କୁ ନିଜ ନିଜର ଜନ୍ମ-ନକ୍ଷତ୍ର ଅନୁସାରେ ବୃକ୍ଷ-ଚାରା ରୋପଣ ପାଇଁ ଉତ୍ସାହିତ କରିଛନ୍ତି । ଛାତ୍ରମାନେ ବିଦ୍ୟାଳୟରୁ ବିଦାୟ ନେବାଯାଏଁ ସେହି ଚାରା ଗୁଡିକର ଯତ୍ନ ନେବା ପାଇଁ ଶପଥ ଗ୍ରହଣ କରିଛନ୍ତି । ବେଦିକ୍ ଇଣ୍ଡିଆ ସୋସାଇଟି ଏବେ ଦେଶର ଅନ୍ୟ ସବୁ ବିଦ୍ୟାଳୟରେ ଏପରି 'ନକ୍ଷତ୍ର ଅରଣ୍ୟ' ସୃଷ୍ଟି କରିବାର ସନ୍ଦେଶ ପ୍ରଚାର କରିବା ପାଇଁ ପ୍ରସ୍ତାବ ଗ୍ରହଣ କରିଛନ୍ତି ।

## ସୁନ୍ଦର ସଫେଇ ପାଇଁ




ସିଲ୍‌ଭେଷ୍ଟର ଗୋଟିଏ ତିନି ମାସର ବିଲେଇ ଛୁଆ । କୋପେନ୍‌ହେଗେନ୍‌ର ଏକ ଫ୍ଲାଟ୍‌ରେ ରହୁଥିବା ତା'ର ମାଲିକାଣୀ ଲକ୍ଷ୍ୟ କରି ପାରି ନଥିଲେ, ସେ କେତେବେଳେ ୱାସିଂ ମେସିନ୍ ଭିତରକୁ ଡେଇଁ ପଡିଥିଲା । ଯେତେବେଳେ ସେ ତା'ର କ୍ରନ୍ଦନ ଶୁଣିଲେ, ସେତେବେଳେ ତାଙ୍କୁ ଏହା ଜଣା ପଡିଲା । ପାଣି ଗରମ ଥିଲା ଓ ଟାଇମର୍‌ରେ ସେଟ୍ କରି ଥିବାରୁ ସେ ତା'କୁ ଖୋଲି ମଧ୍ୟ ପାରୁ ନ ଥିଲେ । ଶେଷରେ ଯେତେବେଳେ ସେ ତା'କୁ ବାହାରକୁ ଆଣିବାରେ ସକ୍ଷମ ହେଲେ, ବିଲେଇ ଛୁଆ ଅଚେତ୍ ହୋଇ ଯାଇଥିଲା ଓ ଅମ୍ଳଜାନ ଅଭାବରୁ ତା'ର ଶରୀର ନୀଳ ପଡି ଯାଇଥିଲା । ତୁରନ୍ତ ସେ ତା'କୁ ନେଇ ପଶୁ ଚିକିତ୍ସାଳୟକୁ ଗଲେ ଓ କିଛି ଦିନର ଚିକିତ୍ସା ପରେ ସେ ଆରୋଗ୍ୟ ଲାଭ କଲା । ସେ ତା'କୁ ଘରକୁ ଫେରାଇ ଆଣିଲେ । ତା'ପରେ ସେ କ'ଣ କଲା, ତୁମେ ଜାଣିବାକୁ ଚାହଁ କି ? ଦେଖିଲା, ୱାସିଂମେସିନ୍ ଖୋଲା ଅଛି, ବାସ୍ ତା' ଭିତରକୁ ଡେଇଁ ପଡିଲା । ସମ୍ଭବତଃ ଏକ ଭଲ ବଢ଼ିଆ ଧୁଲେଇ ପାଇଁ !

# ବିଜୁଳି ସୁରକ୍ଷା




ସିଙ୍ଗାପୁର ସହର-ପ୍ରଶାସନ ତା'ଙ୍କ ଗଛ ମାନଙ୍କର ଖୁବ୍ ଯତ୍ନ ନେଉଛନ୍ତି । ଏବେ ଖୁବ୍ ନିକଟରେ ସେମାନେ ଜାଣିପାରିଲେ ଯେ ପ୍ରତିବର୍ଷ ହାରାହାରି ଦଶଟି ଗଛ ଆକାଶର ବିଜୁଳି ଆଘାତରେ ନଷ୍ଟ ହୋଇ ଯାଉଛି । ସେଥିରୁ ଦୁଇ ବା ତିନୋଟି ଗଛ ସାଙ୍ଗେ ସାଙ୍ଗେ ନଷ୍ଟ ହୋଇ ଯାଉଛନ୍ତି ଆଉ ଅନ୍ୟଗୁଡିକ ଆଘାତ-ପ୍ରାପ୍ତ ହୋଇ ରୋଗିଣା ହୋଇ ପଡୁଛନ୍ତି । ଫଳରେ ସେଗୁଡିକୁ ନଷ୍ଟ କରି ଦିଆଯାଉଛି । ଯାହା ଫଳରେ ପାଖାପାଖି ଅନ୍ୟ ଗଛ ଗୁଡିକ ରୋଗମୁକ୍ତ ରହିବେ । ପ୍ରଶାସନ କର୍ତ୍ତୃପକ୍ଷ ଏବେ ସ୍ଥିର କରିଛନ୍ତି ଯେ, ଗଛ ଗୁଡିକରେ ବିଦ୍ୟୁତ୍-ପ୍ରତିରୋଧୀ କଣ୍ଡକ୍ଟର ଲଗାଇ, ବିଜୁଳି ଆଘାତରୁ ରକ୍ଷା କରିବେ । ତଦ୍ୱାର ଏହି କଣ୍ଡକ୍ଟର, ସିଧାସଳଖ ବିଜୁଳି ଆଘାତ ବହନ କରି, ଭୂମିକୁ ସ୍ଥାନାନ୍ତରିତ କରିବ । ଫଳରେ ଗଛଟି ରକ୍ଷା ପାଇଯିବ । ପ୍ରତିଟି କଣ୍ଡକ୍ଟରର ମୂଲ୍ୟ ୩୦୦୦ ଆମେରିକୀୟ ଡଲାର ହେବ । ତିରିଶ ମିଟରରୁ ଊର୍ଦ୍ଧ୍ୱ ଏହିପରି ଶହେଟି ଗଛ ଏପରି ସୁରକ୍ଷା ପାଇ ମନୋନୀତ ହୋଇଛନ୍ତି । ଖୁବ୍ ମୂଲ୍ୟବାନ ପଦକ୍ଷେପ ନିଶ୍ଚୟ !

# ସାମ୍‌ସନ୍ ଓ ଡେଲିଲାହ




ନା ! ଏଗୁଡିକ ବାଇବେଲ୍‌ର ଓଲ୍ଡ୍ ଟେଷ୍ଟାମେଣ୍ଟର ନାମ ନୁହେଁ- ଲିସ୍‌ଏଞ୍ଜେଲେସ୍‌ର ଭାନ୍ ନ୍ୟୁଜ୍‌ର ଦୁଇଟି କୁକୁରଙ୍କର ନାମ । ଏପରି ନାମ ସେମାନଙ୍କୁ ଦେଇଛନ୍ତି ବାର୍‌ବରା ଫିଏରୋ ନାମକ ୫୮ ବର୍ଷୀୟ ଜନୈକ ବାସିନ୍ଦା । ଯେଉଁମାନେ ତା'ଙ୍କୁ ଅଦ୍‌ଭୁତ ପରିସ୍ଥିତିରେ ମିଳିଥିଲେ । ଗୋଟିଏ ଥିଲା ଲ୍ୟାପ୍ କୁକୁର, ଯିଏ କି ଆଂଶିକ ଅନ୍ଧ । ତା'କୁ ଅନ୍ୟ ଜର୍ମାନ୍ ସେଫାର୍ଡ କୁକୁର ଫୁଟ୍‌ପାଥିରେ ଯିବାରେ, ସିଗ୍‌ନାଲ୍ ପାଖରେ ଅଟକିବାରେ ଓ ରାସ୍ତା ପାରି ହେବାରେ ସାହାଯ୍ୟ କରୁଥିଲା । ବାର୍‌ବରା ସେମାନଙ୍କୁ କିଛି ଦିନ ଲକ୍ଷ୍ୟ କଲେ ଓ ଦେଖିଲେ ଯେ ସେମାନେ ସବୁବେଳେ ଏକାଠି ରହୁଛନ୍ତି । ସେ ସେମାନଙ୍କର ଆଚରଣରେ ବିସ୍ମିତ ହେଲେ ଓ ଛୋଟ କୁକୁରର ଆନ୍ତରିକ ଆନୁଗତ୍ୟ ଓ ବଡ କୁକୁରର ଅଟକିବା ପାଇଁ ସ୍ନେହପ୍ରଦ ଆଦେଶ ତା'ଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କଲା । ଦୟାଳୁ ଭଦ୍ର ମହିଳା ଜାଣିପାରିଲେ ଯେ ସେମାନେ ବାସହରା, ତେଣୁ ସେମାନଙ୍କୁ ନିଜ ଘରକୁ ନେଇ ଆସିଲେ ଓ ସେମାନଙ୍କୁ ବାଇବେଲ୍‌ର ରୋମାଣ୍ଟିକ୍ ଯୋଡ଼ିଙ୍କ ନାମରେ ନାମିତ କଲେ ।

# ଚତୁର ବୀରବଲ



ଦିନକର କଥା । ସମ୍ରାଟ ଆକବରଙ୍କର ଦରବାର ଚାଲିଥାଏ । ଜଣେ ପାରିଷଦ ସମ୍ମୁଖକୁ ଆସି ତିନିଥର ସଲାମ ଜଣାଇ କହିଲେ, ‘‘ଏକ ନୂତନ କିସମର ଅତର ଇସ୍‌ଫାନ୍‌ରୁ ଆସିଛି । ମହାନୁଭବ ସମ୍ରାଟ ତା’ସମ୍ପର୍କରେ କିଛି ମତାମତ ଦେବେ କି ?’’ ସେ ସମ୍ରାଟଙ୍କ ପ୍ରସାରିତ ହାତ ପାପୁଲିରେ ଗୋଟିଏ ଛୋଟ ଶିଶି ରଖିଲେ ।

ଆକବର ଶିଶି ଖୋଲି ନାକରେ ଲଗାଇଲେ, ତାଙ୍କ ମୁହଁରେ ହସ ଫୁଟି ଉଠିଲା । ସେ ତା’ଙ୍କ ପାରିଷଦମାନଙ୍କ ଆଡେ ଚାହିଁ କହିଲେ: ‘‘ଆପଣମାନେ ସମସ୍ତେ ଦେଖିଲେ ଯେ, ମୀର୍ ସାମ୍‌ସୁଦ୍ଦିନ୍‌ଙ୍କ ଠାରୁ ମୁଁ ଏହି ଶିଶିଟି ଗ୍ରହଣ କଲି । କେହି କହି ପାରିବେ କି, କେତେବେଳେ ନେବା ଲୋକର ହାତ ତଳେ ଦେବା ଲୋକର ହାତ ଥାଏ ?’’ ସେ ଉତ୍ତର ପାଇଁ ଅପେକ୍ଷା କଲେ ।





ସାମ୍‌ସୁଦ୍ଦିନ ବୋକାଙ୍କ ଭଳି ଚାହିଁଲେ । ସମ୍ରାଟଙ୍କ ହାତରେ ଶିଶିଟି ରଖି ସେ କିଛି ଭୁଲ କରିଛନ୍ତି କି ? ସେ ସମ୍ରାଟଙ୍କର ପାପୁଲିକୁ ଚାହିଁଲେ । ସେ କିଛି କହିବାକୁ ଯାଉଥିଲେ, ମାତ୍ର ଦେଖିଲେ ଯେ ସମ୍ରାଟ ତାଙ୍କ ହାତ ଉପରକୁ ଉଠାଉଛନ୍ତି । ‘‘କେହି ଏହାର ଉତ୍ତର ଦେଇପାରିବେ କି ?’’

ପାରିଷଦମାନଙ୍କ ମଧ୍ୟରେ ଏକ ଗୁଞ୍ଜରଣ ସୃଷ୍ଟି ହେଲା । ପ୍ରକୃତରେ, ଆକବର ଏପରି ପ୍ରହେଳିକାମୟ ପ୍ରଶ୍ନ ପଚାରିବାକୁ ଭଲ ପାଆନ୍ତି । ଆଜିର ପ୍ରଶ୍ନ ସମସ୍ତଙ୍କୁ ଚକିତ କରି ଦେଇଛି । ସାମସୁଦ୍ଦିନ ତା’ଙ୍କ ଆସନକୁ ଫେରିଗଲେ ।



ଆଉ ଜଣେ ପାରିଷଦ ଠିଆ ହେଲେ, ''ସମ୍ରାଟ, କାହାର ହାତ ତଳେ କିମ୍ବା ଉପରେ ରହିଲେ, ସେଥିରେ କ'ଣ ବା ଫରକ ଅଛି ?'' ସମ୍ରାଟଙ୍କ ମୁହଁରେ ଆଉ ଥରେ ସ୍ମିତହସ ଫୁଟି ଉଠିଲା ।

ଆକବର ଚାରିଆଡକୁ ଚାହିଁଲେ, ସତେ ଯେପରି ସେ କାହାକୁ ଖୋଜୁଛନ୍ତି । ''ତେବେ ଆପଣମାନଙ୍କ ଭିତରୁ କାହାକୁ ଉତ୍ତର ଜଣାନାହିଁ ?'' ବୀରବଲ କାହାନ୍ତି ? ସେ କହିଲେ । ସମସ୍ତଙ୍କର ଆଖି ଆକବରଙ୍କର ପ୍ରିୟ ପାରିଷଦକୁ ଖୋଜି ବୁଲିଲା ।

''ଶାହେନ୍‌ଶାହା ! ମୁଁ ଏଇଠି !'' ପାରିଷଦମାନେ ବୁଲି ଚାହିଁଲେ ଗାଲିଚା ଉପର ଦେଇ ବୀରବଲ ଆସୁଛନ୍ତି । ''ବୀରବଲ ! ତୁମେ ଆସିଗଲ, ମୋର୍ ସନ୍ଦେହ ଦୂର ହୋଇଯିବ ।'' ସମ୍ରାଟ ଖୁସି ହୋଇ ହୋଇଗଲେ । ପୁଣି ଥରେ ତାଙ୍କୁ ପ୍ରଶ୍ନଟି କହିଲେ ।

ବୀରବଲ ସମ୍ରାଟଙ୍କ ପାଖକୁ ଗଲେ । ସେ ଗୋଟିଏ ନାସଦାନୀ ଆଣିଲେ ତା'ର ଘୋଡଣୀଟି କାଢ଼ିଦେଇ ପାପୁଲିରେ ରଖି ସମ୍ରାଟଙ୍କୁ ଦେଖାଇଲେ । ଆକବର ଚିମୁଟାଏ ନାସ ତା'ଙ୍କ ପାପୁଲି ଉପରୁ ଉଠାଇଲେ । ବୀରବଲ ହସି ଦେଇ କହିଲେ: ''ଯେତେବେଳେ ଜଣେ ଆଉଜଣକୁ ନାସ ଯାଚିଥାଏ, ସେତେବେଳେ [illegible] ଉ ନେବା ଲୋକର ହାତ ଉପରେ !''

ଭାରତୀୟ ନୃତ୍ୟ

# ପାଦରେ ତବଲା

ଷୋଡଶ ଶତାବ୍ଦୀରେ, ମାଲବର ଯୁବକ ଓ ସଂସ୍କୃତିସମ୍ପନ୍ନ ଶାସକ ବାଲ ବାହାଦୁରଙ୍କୁ ଏକ ଯୁଦ୍ଧରେ ପରାସ୍ତ ହୋଇ ନର୍ମଦା ଉପତ୍ୟକାର ଏକ ସୁନ୍ଦର ସହର ମାଣ୍ଡୁରୁ ପ୍ରତ୍ୟାବର୍ତ୍ତନ କରିବାକୁ ପଡିଥିଲା । ଦୀର୍ଘଦିନର ପ୍ରେମ ବ୍ୟାପାର ପରେ ସେ ସେଠାରେ ସୁନ୍ଦରୀ ରାଜପୁତ ରାଜକୁମାରୀ ରୂପମତୀଙ୍କୁ ବିବାହ କରିଥିଲେ । ତା'ପରେ ସେ ନିଶ୍ଚୟ ଆଶା କରିଥିବେ ଯେ, ଏଥର ତା'ଙ୍କ ଜୀବନ ସୁଖ ସ୍ୱପ୍ନରେ ବିତିଯିବ । କିନ୍ତୁ ତାହା ଭାଗ୍ୟରେ ନ ଥିଲା । ଆଗ୍ରାଠାରେ ସମ୍ରାଟ ଆକବର ରୂପମତୀଙ୍କ ସୌନ୍ଦର୍ଯ୍ୟ ବିଷୟରେ ବହୁତ କଥା ଶୁଣିବାକୁ ପାଇଲେ । ପ୍ରସିଦ୍ଧ ମାଣ୍ଡୁ ଦୁର୍ଗ ଆକ୍ରମଣ କରି ରାଣୀଙ୍କୁ ଧରି ଆଣିବା ପାଇଁ ତା'ଙ୍କର ସୈନ୍ୟବାହିନୀ ପଠାଇଲେ ।

ଏକ ଭୟାନକ ଯୁଦ୍ଧ ଆରମ୍ଭ ହେଲା । ବାଲ ବାହାଦୁର୍ ଧରା ପଡିଲେ, ମାତ୍ର ସେ ଖସିଗଲେ । ରାଣୀ ରୂପମତୀ, ବନ୍ଦୀ ହେବା ପାଇଁ ଚାହୁଁ ନଥିଲେ, ତେଣୁ ଆତ୍ମହତ୍ୟା କଲେ । ଯଦିଓ ବିଜୟୀ ମୋଗଲ ବାହିନୀ ରାଣୀ ରୂପମତୀଙ୍କୁ ଆକବରଙ୍କ ପାଖକୁ ନେଇ ପାରିଲେ ନାହିଁ, ସେମାନେ ସେଠାରୁ ଅନ୍ୟ ଏକ ମୂଲ୍ୟବାନ ବସ୍ତୁ ନେଇଗଲେ- ତାହା ହେଉଛି ସ୍ଥାନୀୟ ନୃତ୍ୟ ପରମ୍ପରା । ଇତିହାସ କହେ ପ୍ରାୟ ୩୫୦ ଜଣ ନୃତ୍ୟଶିଳ୍ପୀଙ୍କୁ ମାଣ୍ଡୁ ଓ ତା'ର ଆଖପାଖ ଅଞ୍ଚଳରୁ ମୋଗଲ ଦରବାରକୁ ନିଆଯାଇଥିଲା ।

ତତ୍କାଳୀନ ଭାରତୀୟ ନୃତ୍ୟ ପରମ୍ପରା କିପରି- ମୋଗଲ ଦରବାରରେ ପହଞ୍ଚିଲା, ଏହା ହେଉଛି ତା'ର ଏକ [illegible] ଅନେକ ଦୃଷ୍ଟାନ୍ତ ରହିଛି । ଏହାଠାରୁ ଅନେକ ସୁଖପ୍ରଦ ଘଟଣା ମଧ୍ୟ ରହିଛି, ଯାହା ସ୍ଥାନୀୟ ହିନ୍ଦୁ କଳା ପରମ୍ପରା ସହିତ ବିଦେଶାଗତ ମୁସ୍‌ଲିମ ପରମ୍ପରାର ସମ୍ମିଶ୍ରଣ କରାଇଛି । ଏହି ଦୁଇଟି ଭିନ୍ନ ପରମ୍ପରା- ହିନ୍ଦୁ ଓ ମୁସ୍‌ଲିମର ମିଳନରୁ କଥକ ନୃତ୍ୟର ସୃଷ୍ଟି ଘଟିଛି ।

ଆକବରଙ୍କ ଶାସନର ସୁବର୍ଣ୍ଣ କାଳରେ, ମୋଗଲ ଓ ରାଜପୁତ ଦରବାର ମଧ୍ୟରେ ବହୁ ପ୍ରକାର ଭାବର ଅଦାନ ପ୍ରଦାନ ଘଟିଛି । ଏହା ଫଳରେ କଥକ ନୃତ୍ୟ ଦ୍ରୁତ ଗତିରେ ଏକ ପୃଥକ ପରମ୍ପରା ଭାବେ ଗଢ଼ି ଉଠିଛି । ଯାହା ହେଉଛି, ଇଣ୍ଡୋ-ମୋଗଲ କଳା ପରମ୍ପରା । କଥକ ଏହି ପରମ୍ପରାର ଅର୍ନ୍ତଭୁକ୍ତ ।

କଥକରୁ ସୂଚନା ମିଳେ ଯେ, କିପରି ମନ୍ଦିର ପ୍ରାଙ୍ଗଣରେ ପରିବେଷିତ ହେଉଥିବା ଶାସ୍ତ୍ରୀୟ ନୃତ୍ୟ ଦରବାର ବା ସେହିପରି ଧର୍ମନିରପେକ୍ଷ





ସ୍ଥଳୀମାନଙ୍କରେ ପହଞ୍ଚିଥିଲା ।

ଅଷ୍ଟାଦଶ ଶତାବ୍ଦୀ ବେଳକୁ କଥକ ଏକ ନୂତନ ନୃତ୍ୟ ଶୈଳୀ ରୂପରେ ପୂର୍ଣ୍ଣ ବିକଶିତ ହୋଇ ସାରିଥିଲା । ଏହା ନିଜର କୌଶଳ ଓ ବଳିଷ୍ଠ ଭଙ୍ଗୀରେ ଅନ୍ୟ ନୃତ୍ୟ ଠାରୁ ବେଶ୍ ପୃଥକ ଥିଲା ।

ଷୋଡଶ ଶତାବ୍ଦୀର ପ୍ରାରମ୍ଭ କାଳରେ କଥକ ନୃତ୍ୟଶିଳ୍ପୀମାନେ ଚିପା ଚୁଡିଦାର ପାଇଜାମା ପିନ୍ଧୁଥିଲେ । ମୋଗଲ ଚିତ୍ରକଳାମାନଙ୍କରୁ ଜଣାଯାଏ ଯେ ନୃତ୍ୟଶିଳ୍ପୀମାନେ ଖୁବ୍ ଲମ୍ବା ପାଇଜାମା ପିନ୍ଧୁଥିବା ବେଳେ, ଚୁଡିଦାର ପିନ୍ଧିଥିବାର ମଧ୍ୟ ଦେଖାଯାଏ । ଷୋଡଶ ଶତାବ୍ଦୀର ଶେଷ ବେଳକୁ, ନୃତ୍ୟଶିଳ୍ପୀମାନେ ମୋଟା ପାଉଁଜ ପିନ୍ଧିବା ଆରମ୍ଭ କଲେ, ଯାହାକୁ ନୂପୁର କୁହାଯାଏ । ଏଥିରେ ବଡ ବଡ ଘୁଙ୍ଗୁର ଲାଗିଥାଏ ।

କଥକ ଓ ଅନ୍ୟାନ୍ୟ ନୃତ୍ୟଶୈଳୀ ମଧ୍ୟରେ ଗୁରୁତ୍ୱପୂର୍ଣ୍ଣ ପାର୍ଥକ୍ୟ ହେଉଛି, ଅନ୍ୟ ନୃତ୍ୟ ଶୈଳୀ ଗୁଡିକ ସଂଗୀତର ଦୁଇଟି ଦିଗ *ସ୍ୱର* ଓ *ରାଗ* ଉପରେ ଅଧିକ ନିର୍ଭର କରୁଥିବା ବେଳେ କଥକ କେବଳ ସଂଗୀତର *ତାଳ* ଉପରେ ନିର୍ଭର କରେ । ପାଦର ଜଟିଳ ଓ ଛନ୍ଦାୟିତ ଚାଳନା ହେଉଛି ଏହି ନୃତ୍ୟର ବିଶେଷତ୍ୱ ।

ନୃତ୍ୟର ବିଷୟବସ୍ତୁ ପୌରାଣିକ କଥାରୁ ଆସିଥାଏ । ବିଶେଷତଃ କୃଷ୍ଣଲୀଳା ପ୍ରସଙ୍ଗ ହିନ୍ଦୁସ୍ଥାନୀ ଶାସ୍ତ୍ରୀୟ ସଙ୍ଗୀତ ସହିତ ପରିବେଷଣ କରାଯାଏ । ଏଥି ସହିତ ସାରଙ୍ଗୀ ଓ ତବଲାର ସଂଯୋଗ ଥାଏ ।

କଥକ ନୃତ୍ୟକୁ ଲୋକପ୍ରିୟ ଓ ପୁନଃ ପ୍ରତିଷ୍ଠିତ କରିବାରେ ଲକ୍ଷ୍ନୌର କିମ୍ବଦନ୍ତୀୟ ନୃତ୍ୟ ଶିଳ୍ପୀ ମହାରାଜ ବିନ୍ଦାଦିନ ଓ ତାଙ୍କ ଭାଇ କାଲ୍‌କା, ସେମାନଙ୍କର ବଂଶଧର, ଅଚନ ମହାରାଜ, ଲୁଚ୍ଛୁ ମହାରାଜଙ୍କର ଅବଦାନ ରହିଛି । ଅନ୍ୟମାନଙ୍କ ମଧ୍ୟରେ ବିର୍‌ଜୁ ମହାରାଜ ଓ ଶମ୍ଭୁ ମହାରାଜ ମଧ୍ୟ କଥକକୁ ଏକ ଗତିଶୀଳ ନୃତ୍ୟକଳା ଭାବେ ପ୍ରତିଷ୍ଠିତ କରାଇଛନ୍ତି ।

<u>ସାଧାରଣତଃ କଥକରେ</u>

- ଜଣେ କଥକ ନୃତ୍ୟଶିଳ୍ପୀ ଗୋଟିଏ କାନ୍ଧ ଉପରକୁ ଉଠାଇଥାଏ । ଏହି ଶୈଳୀକୁ *କସକ୍‌ମସକ୍* କୁହାଯାଏ ।
- କଥକ ନୃତ୍ୟଶିଳ୍ପୀମାନେ ଲମ୍ଫ ଓ ଚକାଭଉଁରୀ କରି ଦର୍ଶକଙ୍କୁ ବିମୋହିତ କରି ଥାଆନ୍ତି । ସମ୍ଭବତଃ ଏହା ହିଁ ଏକମାତ୍ର ନୃତ୍ୟଶୈଳୀ ଯେଉଁଥିରେ ନୃତ୍ୟଶିଳ୍ପୀ ଦୁଇ ପାଦ ଉପରକୁ ଏକାସଙ୍ଗେ ଉଠାଇ, ଶୂନ୍ୟରେ କିଛି ସମୟ ପାଇଁ ଝୁଲି ରହେ । କଥକ ତା'ର 'ଚକ୍କର' ବା ଭଉଁରୀ ପାଇଁ ଖୁବ୍ ଜଣାଶୁଣା, ଯେଉଁଥିରେ ନୃତ୍ୟଶିଳ୍ପୀ ଥରକୁ ଥର ଘୁରି ବୁଲିଥାଏ । ସାଧାରଣତଃ ଏହା ନୃତ୍ୟର ଶେଷ ଆଡକୁ ଥାଏ ।
- କଥକ ହେଉଛି ସମ୍ଭବତଃ ଏକମାତ୍ର ଶାସ୍ତ୍ରୀୟ ନୃତ୍ୟ, ଯେଉଁଥିରେ ନୃତ୍ୟଶିଳ୍ପୀ ନିଜେ ନିଜର ବୋଲ୍ ବା ତାଳ ଆବୃତ୍ତି କରେ, ଯାହାକୁ ସେ ତା'ର ପାଦର ଜଟିଳ ଓ ଦ୍ରୁତ ଚାଳନା ଦ୍ୱାରା ପ୍ରକାଶ କରେ ।

ଭାରତୀୟ ପର୍ବ

# ମକର ସଂକ୍ରାନ୍ତି

ସାରା ଭାରତରେ, ଜାନୁୟାରୀ ମାସରେ ପାଳିତ ହେଉଥିବା ମକର ସଂକ୍ରାନ୍ତି, ଏକ ବର୍ଣ୍ଣାଢ୍ୟ ପର୍ବ ।

ଏହି ଦିବସରେ ଉତ୍ତରାୟଣ ଗତି ଆରମ୍ଭ ହୁଏ, ଅର୍ଥାତ ଉତ୍ତର ଗୋଲାର୍ଦ୍ଧ ସୂର୍ଯ୍ୟଙ୍କର ନିକଟବର୍ତ୍ତୀ ହେବାକୁ ଆରମ୍ଭ କରେ । ପାରମ୍ପରିକ ଭାବରେ ଏହା ବିଶ୍ୱାସ କରାଯାଏ ଯେ, ଏହି ଦିନରେ ସୂର୍ଯ୍ୟ ମକର ରାଶିରେ ପ୍ରବେଶ କରନ୍ତି ।

ଏହା ବିଶ୍ୱାସ କରାଯାଏ ଯେ, ଏହି ସମୟରେ ମୃତ୍ୟୁ ବରଣ କଲେ ଜନ୍ମ ମୃତ୍ୟୁ ଚକ୍ରରୁ ମୁକ୍ତ ହେବେ । ମହାଭାରତରେ ଉଲ୍ଲେଖ ରହିଛି ଯେ, ପ୍ରବୀଣ ଯୋଦ୍ଧା ପିତାମହ ଭୀଷ୍ମ, ପାଣ୍ଡବ ଓ କୌରବଙ୍କ ମଧରେ ଚାଲିଥିବା ମହାସମର କୁରୁକ୍ଷେତ୍ରରେ ଗୁରୁତର ଆଘାତପ୍ରାପ୍ତ ହେଲେ । ସେ ଏକ ବର ପାଇଥିଲେ ଯେ, ସେ ଇଚ୍ଛାମୃତ୍ୟୁ ବରଣ କରିପାରିବେ ବା ନିଜେ ନିଜର ମୃତ୍ୟୁ ସମୟ ସ୍ଥିର କରି ପାରିବେ । ପାଣ୍ଡବ ବୀର ଅର୍ଜୁନଙ୍କ ଦ୍ୱାରା ପ୍ରସ୍ତୁତ ଶରଶଯ୍ୟାରେ ଶୋଇ ରହି ସେ ଉତ୍ତରାୟଣ ସମୟ ପର୍ଯ୍ୟନ୍ତ ଅପେକ୍ଷା କଲେ । ସୂର୍ଯ୍ୟ ମକର ରାଶିରେ ପ୍ରବେଶ କରିବା ପରେ ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ, ଯାହା ଫଳରେ ତାଙ୍କର ପୁନର୍ଜନ୍ମ ଘଟିବ ନାହିଁ ।

### *ତାମିଲନାଡୁ*

ତାମିଲମାନଙ୍କର ଦିନ ପଞ୍ଜିକାରେ ପୋଙ୍ଗାଲ୍ ହେଉଛି ଅନ୍ୟତମ ବିଶିଷ୍ଟ ପର୍ବ । ଏହା ଏକ ଫସଲ ଅମଳର ପର୍ବ, ଯାହା ଚାରିଦିନ ଧରି ପାଳନ କରାଯାଏ । ପର୍ବର ମୁଖ୍ୟ ଦିବସ ହେଉଛି ମକର ସଂକ୍ରାନ୍ତି ।

ପର୍ବର ପ୍ରଥମ ଦିନଟିକୁ କୁହାଯାଏ,-*ଭୋଗି* । ଏହିଦିନ ସାରା ରାଜ୍ୟର ଗ୍ରାମ ଓ ସହର ମାନଙ୍କରେ ଗୃହକୁ ସଫାସୁତୁରା କରାଯାଏ, ପୁରୁଣା ଅନାବଶ୍ୟକ ଜିନିଷକୁ ବଡି ସକାଳୁ ନିଆଁ ଲଗାଇ ପୋଡି ଦିଆଯାଏ ।

ଆଉ ତା'ପରେ ଆସେ ପୋଙ୍ଗାଲ । ଗ୍ରାମ ମାନଙ୍କରେ, କୃଷକମାନେ ନୂତନ ମାଟିପାତ୍ର କିଣନ୍ତି,



ନୂତନ ପୋଷାକ ପିନ୍ଧନ୍ତି ଓ ଭୋଜିଭାତ କରନ୍ତି । ଏହି ଦିନରେ ନୂଆ ଅମଳ ହୋଇଥିବା ଚାଉଳ ଓ ଋତୁକାଳୀନ ପନିପରିବା ରୋଷେଇ କରାଯାଏ, ସବୁ ଗ୍ରାମ ମାନଙ୍କରେ, ଗ୍ରାମରସବୁ ଲୋକମାନେ ମିଶି ବଡ ପାତ୍ରରେ ନୂତନ ଚାଉଳର କ୍ଷିରୀ କରନ୍ତି ।

ସହର ମାନଙ୍କରେ, ମଧ୍ୟ ଚାଉଳ ଓ ଗୁଡରେ ପ୍ରସ୍ତୁତ ପାରମ୍ପରିକ ମିଠା *ଚାକରାଇ-ପୋଙ୍ଗାଲ* ପ୍ରସ୍ତୁତ କରାଯାଏ ।

ସବୁ ଘର ସମ୍ମୁଖରେ ବିରାଟ *ରଙ୍ଗୋଲୀ* ଓ *କଲୋମ* ସହିତ ଦ୍ୱାରରେ ଝୁଲୁଥିବା ଆମ୍ରପତ୍ରର ମାଳ, ଏକ ବର୍ଣ୍ଣାଢ଼୍ୟ ଓ ପର୍ବମୁଖର ପରିବେଶ ସୃଷ୍ଟି କରେ । ସୂର୍ଯ୍ୟ ଦେବତାଙ୍କୁ ଏହି ଅବସରରେ ପୂଜା କରାଯାଏ ।

ପର୍ବର ତା'ପରଦିନକୁ *ମାଟ୍ଟୁ* ପୋଙ୍ଗାଲ କୁହାଯାଏ । ଏହିଦିନ ଗାଈ, ବଳଦ ମାନଙ୍କୁ, ସେମାନଙ୍କର ମାନବ-ସମାଜକୁ ଅବଦାନ ନିମନ୍ତେ ପୂଜା କରାଯାଏ । ପଶୁମାନଙ୍କୁ ସଫାସୁତୁରା କରି ଗାଧୋଇ ଦିଆଯାଏ, ସେମାନଙ୍କର ଶିଙ୍ଗ ଓ ବେକରେ ଫୁଲମାଳ, ଛୋଟ ଛୋଟ ଘାଘୁଡି ବାନ୍ଧି ଦିଆଯାଏ । ସେ ସବୁ ପୋଙ୍ଗାଲାରେ ସେହି ଦିନଟି ପାଇଁ ସ୍ୱତନ୍ତ୍ର ଭାବେ ପ୍ରସ୍ତୁତ କରାଯାଇଥାଏ ।

ରାଜ୍ୟର ଗ୍ରାମାଞ୍ଚଳ ମାନଙ୍କରେ ଏହି ଦିବସର ମୁଖ୍ୟ ଆକର୍ଷଣ ହେଉଛି ପାରମ୍ପରିକ ଷଣ୍ଢ ଲଢ଼େଇ । ବଳଦ ଦୌଡ ପ୍ରତିଯୋଗିତା ମଧ୍ୟ ଏହି ଦିନ ଆୟୋଜିତ ହୋଇଥାଏ ।

ପର୍ବର ଶେଷ ଦିବସଟିକୁ *କାନୁମ୍ ପୋଙ୍ଗାଲ* କୁହାଯାଏ, ଯେଉଁ ଦିନ ପରିବାରର ସବୁ ଲୋକେ ବନ୍ଧୁ ବାନ୍ଧବ ଘରକୁ ବୁଲି ଯାଆନ୍ତି ଓ ବିଭିନ୍ନ ସ୍ଥାନ ଭ୍ରମଣ କରନ୍ତି । କେତେକ ଅଞ୍ଚଳରେ, ଏହି ଦିନ *'କାନ୍ନି ପୋଙ୍ଗାଲ'* ପାଳନ କରାଯାଏ । ବାଳିକାମାନେ ଦଳବଦ୍ଧ ଭାବରେ ପାରମ୍ପରିକ ସୂଚୀକାମ ହୋଇଥିବା *କୋଲାଟାଲ୍* ଓ *କୁମ୍ମି* ପୋଷାକ ପରିଧାନ କରି, ଗୃହ ସମ୍ମୁଖରେ ପାରମ୍ପରିକ ନୃତ୍ୟ ପରିବେଷଣ କରନ୍ତି । ଗୃହର ମାଲିକ ସେମାନଙ୍କୁ ଅର୍ଥ ଓ ମିଠା ପାରିତୋଷିକ ଦିଅନ୍ତି ।

## *ଆନ୍ଧ୍ରପ୍ରଦେଶ*

କୁହୁଡି ଓ ଥଣ୍ଡା ପାହାନ୍ତି ପହର ଦେଇ ଆରମ୍ଭ ହୁଏ ଆନ୍ଧ୍ର ପ୍ରଦେଶର ଫସଲ ଅମଳର ପର୍ବ । ତାମିଲନାଡୁ ପରି ମକର ସଂକ୍ରାନ୍ତି ଠିକ୍ ଗୋଟିଏ ଦିନ ପୂର୍ବରୁ ଭୋଗିରେ ମଧ୍ୟ ପର୍ବ ଆରମ୍ଭ ହୁଏ ।

'ଭୋଗି' ଦିନରେ ଘର ମାନଙ୍କରେ ଚୂନ ଦିଆଯାଏ, ପରିଷ୍କାର କରାଯାଇ ସୁନ୍ଦର ଭାବେ ସଜାଯାଏ ।



ମକର ସଂକ୍ରାନ୍ତିକୁ ସେମାନେ *ପେଜା ପାନ୍ଡୁଗା* ବା ବଡପର୍ବ କୁହାଯାଏ । ଏହି ଦିନ କୃଷକମାନେ ସେମାନଙ୍କୁ କୃଷି କାମରେ ସାହାଯ୍ୟ କରିଥିବା ଶ୍ରମିକ ଓ ମଜୁରିଆ ମାନଙ୍କୁ ଭୋଜି ଦିଅନ୍ତି ।

ତୃତୀୟ ଦିବସକୁ କୁହାଯାଏ *କାନୁମୁ* । ଏହି ଦିନଟି ବିଶ୍ରାମ ଓ ଭୋଜିଭାତରେ ବିତିଯାଏ । ବିଭିନ୍ନ ପ୍ରକାରର ଦୌଡ ପ୍ରତିଯୋଗିତା, କ୍ରୀଡା, ମେଣ୍ଢା, ଷଣ୍ଢ ଓ କୁକୁଡା ଲଢ଼େଇର ଆୟୋଜନ କରାଯାଏ ।

ଆନ୍ଧ୍ର ପ୍ରଦେଶର କେତେକ ଅଞ୍ଚଳରେ ଏହି ପର୍ବ *ମୁକ୍କାନୁମୁ* ପାଳନ କରାଯାଇ ଉଦ୍‌ଯାପିତ ହୁଏ, ଯେଉଁଥିରେ ଗାଈ, ବଳଦମାନଙ୍କୁ ପୂଜା କରାଯାଇ ଉତ୍ତମ ଭୋଜନ ଦିଆଯାଏ ଓ ଶୋଭାଯାତ୍ରାରେ ନିଆଯାଏ ।

## *ଆସାମ*

ଆସାମରେ ମକର ସଂକ୍ରାନ୍ତିର ପର୍ବ କହିଲେ କୌତୁକ, ମଉଜ ଓ ଭୋଜିଭାତର ସମୟ । ଏଠାରେ ଏହାକୁ କୁହାଯାଏ *ମାଘ ବିହୁ* ବା *ବୋଗାଲି ବିହୁ* । *ଭୋଗ* ଶବ୍ଦର ଅର୍ଥ ଭୋଜନ ଓ ଉପଭୋଗ କରିବା ।

*ଉରୁକ* ବା ପର୍ବର ଆରମ୍ଭ ଦିନ ଓ ପୌଷ ମାସର ଶେଷଦିନ ଅବସରରେ ଲୋକମାନେ ଫସଲ କଟା ସରିବା ପରେ ଶୂନ୍ୟ ପଡିଥିବା ଜମିରେ ଗୋଟିଏ ଛୋଟକାଟିଆ କୁଡିଆ ତିଆରି କରନ୍ତି । ଏହି କୁଡିଆକୁ କୁହାଯାଏ *ଭେଲାଘର* । *ମେଜି* ଚାରିପାଖେ ନାଚଗୀତ କରି କଟାଇ ଦିଅନ୍ତି । ଭୋର ବେଳକୁ ସେମାନେ ଶୁଦ୍ଧପୂତ ସ୍ନାନ କରି ପ୍ରାର୍ଥନା କରନ୍ତି । ଏହି ପରି ପର୍ବରେ ପ୍ରତ୍ୟେକ ଲୋକ କିଛି ନା କିଛି ମଉଜ ମଜଲିସ୍ କରିଥାନ୍ତି । ପ୍ରତ୍ୟେକ ଘରେ ପିଠା ପଣା ହୁଏ ।



# ଅନ୍ୟତ୍ର

ଭାରତର ଅନ୍ୟ ସ୍ଥାନମାନଙ୍କରେ ମଧ୍ୟ ମକର ସଂକ୍ରାନ୍ତି ପର୍ବ ଆନନ୍ଦମୁଖର, ଆଧ୍ୟାତ୍ମିକ ବାତାବରଣରେ ପାଳନ କରାଯାଏ । ପଞ୍ଜାବରେ ଏହାକୁ *ଲୋହରି* ନାମରେ ପାଳନ କରାଯାଏ, ଯାହା ଫସଲ ଅମଳର ପ୍ରତୀକ ବହନ କରୁଥିବା ଏକ ଗ୍ରାମୀଣ ପର୍ବ । ଗ୍ରାମର ଛକ ସ୍ଥାନ ମାନଙ୍କରେ ସ୍ତ୍ରୀ ଓ ପୁରୁଷ ଲୋକମାନେ ଏହି ଅବସରରେ *'ଭାଙ୍ଗ୍ରା'* ଲୋକନୃତ୍ୟ ପରିବେଷଣ କରନ୍ତି । ସ୍ତ୍ରୀ ଲୋକମାନେ ଏହି ଅବସରରେ ହେନା ଓ ମେହେନ୍ଦୀ ବାଟି ଖୁବ ସୁନ୍ଦର ଭାବେ ହାତ ଓ ପାଦକୁ ଚିତ୍ରିତ କରନ୍ତି ।

ପଶ୍ଚିମ ବଙ୍ଗରେ ମକର ସଂକ୍ରାନ୍ତି ଦିନ ବିଭିନ୍ନ ଅଞ୍ଚଳରୁ ତୀର୍ଥ ଯାତ୍ରୀମାନେ ଗଙ୍ଗାସାଗର ଦ୍ୱୀପରେ ଏକତ୍ରିତ ହୁଅନ୍ତି । ଗଙ୍ଗାନଦୀ ଯେଉଁ ସ୍ଥାନରେ ବଙ୍ଗୋପସାଗର ସହିତ ମିଳିଛି, ସେହି ଗଙ୍ଗା ସାଗର ଦ୍ୱୀପରେ *ଗଙ୍ଗା ସାଗର ମେଳା* ଅନୁଷ୍ଠିତ ହୁଏ । ବିଶ୍ୱାସ କରାଯାଏ ଯେ ଏହି ସଂଗମ ସ୍ଥଳୀରେ ସ୍ନାନ କଲେ ସକଳ ପାପ ବିଧୌତ ହୁଏ ।

କର୍ଣ୍ଣାଟକରେ ମଧ୍ୟ ଫସଲ ଅମଳର ପର୍ବ ଭାବେ ଏହି ଦିନଟି ବଡ ଧୁମ୍ ଧାମ୍‌ରେ ପାଳନ କରାଯାଏ । ଗାଈ, ବଳଦମାନଙ୍କୁ ସୁସଜ୍ଜିତ କରି ପଟୁଆରରେ ବାହାର କରାଯାଏ । ସ୍ତ୍ରୀ ଓ ପୁରୁଷ ଲୋକମାନେ ନୂତନ ବସ୍ତ୍ର ପରିଧାନ କରି ପରସ୍ପରକୁ ଅଭିନନ୍ଦନ ଜଣାନ୍ତି ଓ ଆଖୁ, ନଡିଆ ଓ ଚଣାଭଜା ଦିଅନ୍ତି । ଏହି ଅବସରରେ ଗୁଡିଉଡାଇବା ଭଳି ଲୋକପ୍ରିୟ ପାରମ୍ପରିକ କ୍ରୀଡା ଅନୁଷ୍ଠିତ ହୁଏ ।

ଗୁଜୁରାଟର ନଭୋମଣ୍ଡଳ ମଧ୍ୟ ରଙ୍ଗବେରଙ୍ଗର ସୁନ୍ଦର ଗୁଡିରେ ସଂକ୍ରାନ୍ତି ଦିନ ଭରପୁର ହୋଇଯାଏ । ଗୁଜୁରାଟୀମାନେ ବିଚାର କରନ୍ତି ଯେ ସଂକ୍ରାନ୍ତି ଏକ ବିଶେଷ ଦିବସ ଓ ଏହି ଦିନ ସେମାନେ ଛାତ୍ରମାନଙ୍କୁ ବୃତ୍ତି ଓ ପୁରସ୍କାର ବଣ୍ଟନ କରନ୍ତି ।

କେରଳରେ, ସାବରୀମାଲାସ୍ଥିତ ଭଗବାନ ଆୟାପାଙ୍କ ମନ୍ଦିରରେ ବାର୍ଷିକ ତୀର୍ଥ ଯାତ୍ରା ମକର ସଂକ୍ରାନ୍ତି ସମାପ୍ତ ହୁଏ, ଯେତେବେଳେ "ମକର ଜ୍ୟୋତି"- ଏକ ଦିବ୍ୟ ଆଲୋକ, ପାହାଡ ଉପରେ ସୁଦୂର ଦିଗ୍‌ବଳୟରେ ଦୃଷ୍ଟିଗୋଚର ହୁଏ ।

ମକର ସଂକ୍ରାନ୍ତି ଭାରତର ବିଭିନ୍ନ ସ୍ଥାନର ଲୋକମାନଙ୍କ ପାଇଁ ବିଭିନ୍ନ ପ୍ରକାରର ଅର୍ଥ ବହନ କରି ଆସେ । କିନ୍ତୁ ପର୍ବ ପାଳନର ଏହି ବିଭିନ୍ନତା ମଧ୍ୟରେ ଏକ ସାଧାରଣ ଅନୁଭବ ସମସ୍ତଙ୍କୁ ବାନ୍ଧି ରଖିଥାଏ । ଦୀପାବଳୀକୁ ଯଦି ଆମେ ଆଲୋକର ପର୍ବ କହିବା, ତେବେ ମକର ସଂକ୍ରାନ୍ତି ହେଉଛି ଫସଲ ଅମଳର ପର୍ବ, ଯେଉଁ ଅବସରରେ ନୂତନ ଫସଲକୁ ସ୍ୱାଗତ ଜଣାଯାଏ ଓ ଅଧିକରୁ ଅଧିକ ସୁଖ, ସମୃଦ୍ଧିର କାମନା କରି ପ୍ରାର୍ଥନା କରାଯାଏ ।

ଓଡ଼ିଆପୋର୍ଟାଲ୍.ଇନ୍

## ଡାମିଲନାଡୁର ଲୋକକଥା

ତାମିଲନାଡୁ କଥା ଭାବିଲେ ତୁମ ମନକୁ କ'ଣ ଆସେ ! କାଞ୍ଚିପୁରମ୍‌ର ନରମ ସିଲ୍‌କ୍ ଶାଢ଼ୀ, ଇଡ୍‌ଲି-ଦୋସା, କର୍ଣ୍ଣାଟକୀ ସଂଗୀତ, ଭାରତନାଟ୍ୟମ ଓ ଏହାର ମନ୍ଦିର ସବୁ । ଯୀଶୁଙ୍କ ଜନ୍ମର ବହୁ ପୂର୍ବରୁ ଏଠାରେ ଏକ ରାଜବଂଶ ଶାସନ କରୁଥିଲା ବୋଲି ଜଣାଯାଏ । ଏବେ ଭାରତରେ ଯେତେ ଭାଷା ଅଛି, ତାମିଲ ହେଉଛି ତାନ୍ମଧ୍ୟରେ ସର୍ବ ପୁରାତନ ।

ତାମିଲନାଡୁ ପ୍ରଦେଶର ଉତ୍ତରରେ କର୍ଣ୍ଣାଟକ ଓ ଆନ୍ଧ୍ରପ୍ରଦେଶ ଓ ପଶ୍ଚିମରେ କେରଳ ରହିଛି । ବଙ୍ଗୋପସାଗର ଓ ଭାରତ ମହାସାଗର ଏହାର ପୂର୍ବ ଓ ପଶ୍ଚିମ ସୀମାରେଖା । ତାମିଲନାଡୁର ଦକ୍ଷିଣର ଶୀର୍ଷରେ ରହିଛି କେପ୍ ଅଡ କାମୋରିନ୍ ବା କନ୍ୟାକୁମାରୀ- ଯେଉଁଠାରେ ଭାରତ ଭୂଖଣ୍ଡ ସମୁଦ୍ର ମଧ୍ୟକୁ ପ୍ରବେଶ କରିଯାଇଛି ।

ପୂର୍ବଘାଟ ଓ ପଶ୍ଚିମଘାଟ ପର୍ବତ ଶ୍ରେଣୀ ତାମିଲନାଡୁଠାରେ ଏକତ୍ର ହେଉଛନ୍ତି । ଉଟି, କୋଡାଇକେନାଲ, ୟେର୍‌ଚୁଡ୍ ଓ କୋଠଗିରି ତାମିଲନାଡୁର ଲୋକପ୍ରିୟ ପାର୍ବତ୍ୟନିବାସ, ଏହି ଅଞ୍ଚଳରେ ଅବସ୍ଥିତ ।

ଏହାର ଆୟତନ ହେଉଛି ୧୩୦,୦୫୮ ବର୍ଗ କିଲୋମିଟର ଓ ଲୋକ ସଂଖ୍ୟା ୬୨,୧୧୦,୮୩୯ । ତାମିଲନାଡୁ ହେଉଛି ଭାରତର ଏକାଦଶତମ ବୃହତ୍ତମ ପ୍ରଦେଶ ।

# ପଖାଳ ଭାତକୁ ଘୋଳଦହି

ମୁରୁଗାଁ ଓ ତା' ସ୍ତ୍ରୀ ସେଲ୍‌ଭି ତାମିଲନାଡୁର ଦକ୍ଷିଣ ପ୍ରାନ୍ତର ଅଭ୍ୟନ୍ତରର ଏକ ଗ୍ରାମ ପୁଲିୟାମ୍‌ପଟ୍ଟିରେ ବାସ କରୁଥିଲେ । ମୁରୁଗାଁ ଖୁବ୍ ଗରିବ ଥିଲା ।

ତାର ଜମିବାଡି ନ ଥିଲା କିମ୍ବା ତା'କୁ କାମଧନ୍ଦା ମିଳୁ ନ ଥିଲା । ସେଲ୍‌ଭି ବଡ କଷ୍ଟରେ ପରିବାର ଚଳାଇ, ଦୁଇ ଓଳି ପାଇଁ ଦୁଇମୁଠା ଆହାର ଯୋଗାଡ କରୁଥିଲା । ଦିନେ ସେଲ୍‌ଭି ଅନୁଭବ କଲା ଯେ, ତା'ପକ୍ଷରେ ଘର ଚଳାଇବା ଆଉ ସମ୍ଭବ ନୁହେଁ । ତେଣୁ ସେ ମୁରୁଗାଁକୁ କହିଲା:



''ଯଦି ତୁମେ ରୋଜଗାର କରିବା ପାଇଁ କିଛି ଉପାୟ ବାହାର କରି ନପାରୁଛ, ମୁଁ ମୋ ମା' ଘରକୁ ଚାଲି ଯାଉଛି।'' ତା'ପରେ ସେ କ'ଣ ଭାବିଲା କେଜାଣି ରାତିର କିଛି ଭାତ ପଖାଳ କରି ରଖିଥିଲା, ତା'କୁ ବାହାର କଲା। ସେଥିରେ କିଛି ଲୁଣମିଶା *ନୀର୍‌ମୋରୁ* ମିଶାଇଲା ଓ ସେଥିରେ କେତୋଟି *ପାଚ୍ଚାଇ ମୋଲାଗାଇ* ରଖିଲା, ଯାହା ଖାଇବାକୁ ରାଗ ଲାଗିବ। ଏସବୁ ଏକାଠି ବାନ୍ଧି ଦେଇ ସ୍ୱାମୀ ହାତକୁ ବଢ଼ାଇ ଦେଲା।



''ତୁମେ ଏବେ ସହରକୁ ଯାଅ ଓ କିଛି କାମ ଯୋଗାଡ କର। କିଛି ଆଖିଦୃଶିଆ ରୋଜଗାର ନ କଲାଯାଏ ତୁମେ ଘରକୁ ଫେରିବ ନାହିଁ।'' ସେଲ୍‌ଭି କହିଲା।

ମନେ ମନେ ଖୁବ୍ ଦୁଃଖିତ ହୋଇ ମୁରୁଗାଁ ବଡ କୁଣ୍ଠିତ ମନରେ ସହର ଆଡକୁ ଚାଲିଲା। ସେଦିନ ଖୁବ୍ ଖରା ହେଉଥାଏ। ଘଣ୍ଟାଏ ବାଟ ଚାଲିବା ପରେ ସେ ଗୋଟିଏ ବିରାଟ ତେନ୍ତୁଳି ଗଛ ତଳେ ଆସି ପହଞ୍ଚିଲା।

''ତା'ପରେ ଦ୍ୱିପ୍ରହର ବେଳକୁ ସେଲ୍‌ଭି ଦେଇଥିବା *ପାଝାୟା ସୋରୁ* ପୁଡିଆକୁ ଯତ୍ନର ସହିତ ଗଛଡାଳରେ ବାନ୍ଧିଦେଲା, ଯେପରି କୌଣସି ଜୀବଜନ୍ତୁ ତା'କୁ ଛୁଇଁ ପାରିବେ ନାହିଁ ଓ ସେ ଆରାମରେ ଶୋଇଗଲା।

ସେ *ପୁଲିୟା ମାରାମ*ରେ ଗୋଟିଏ ବୟସ୍କ *ବ୍ରହ୍ମରାକ୍ଷସନ୍* ରହୁଥିଲା *ବ୍ରହ୍ମରାକ୍ଷସନ୍* ମନରେ କୌତୁହଳ ଜାତ ହେଲା ଯେ, ମୁରୁଗାଁ ତା'ର ପୁଡିଆରେ କ'ଣ ରଖିଛି ଯେ, ତା'କୁ ଏତେ ଯତ୍ନରେ ଗଛ ଡାଳରେ ବାନ୍ଧିଲା। ତେଣୁ ସେ ପୁଡିଆ ପାଖକୁ ଗଲା ଓ ତା'କୁ ଫିଟେଇଲା। ତା'ପରେ ସେ ଜୋର୍‌ରେ ଏକ ପ୍ରଶ୍ୱାସ ନେଲା।

''*ଏନ୍ନା ଆର୍‌ପୁଆମାନା ବାସନାଇ!* ଏହା କେଉଁ ପ୍ରକାରର ଖାଦ୍ୟ! ମୁଁ ଆଗରୁ ଏପରି ବାସ୍ନା କେବେ ଶୁଙ୍ଘିନାହିଁ।'' ସେ ନିଜକୁ ନିଜେ କହିଲା। ତା'ପରେ ସେ ଆଉ ସମ୍ଭାଳି ପାରିଲା ନାହିଁ। ହାତରେ ମୁଠାଏ *ସୋରୁ* ନେଇ *ପାଚ୍ଚାଇ ମୋଲାଗାଇ* ଟିକେ କାମୁଡି ଦେଲା। ଏହା ତା'କୁ ଏତେ ଭଲ ଲାଗିଲା ଯେ ସେ ସେଥିରୁ ମୁଠା ପରେ ମୁଠା ଖାଇ ଚାଲିଲା। କେତେବେଳେ ସେ ସବୁ ସରିଗଲା, ସେ ନିଜେ ବି ଜାଣି ପାରିଲା ନାହିଁ।

ତା'ପରେ ସେ ଖୁବ୍ ଅପରାଧୀ ମନେ କଲା ''ବିଚରା ଗରିବ ଲୋକ! ଏବେ ଭୋକରେ ଛଟପଟ ହୋଇ ସେ କ'ଣ ଖାଇବ?'' *ରା'କ୍ଷସନ୍* ଭାବିଲା। ତେଣୁ ସେ ଗୋଟିଏ ଯାଦୁକରୀ ତମ୍ବା ପାତ୍ରକୁ କନାରେ ଗୁଡାଇ ତା' *ପାଝାୟାସୋରୁ* ପୁଡିଆରେ ରଖିଦେଲା। '*ଏହି ଭେଙ୍ଗଲା ପାନ୍ନାଇ* ତୋ'ର ଉପକାରରେ ଆସିବ!' ନିଦରେ ଘୁଙ୍ଗୁଡି ମାରୁଥିବା ମୁରୁଗାଁକୁ ଲକ୍ଷ୍ୟକରି ସେ ଏତକ କହିଲା।



## ପର୍ବ ପର୍ବାଣୀ

*ପୋଙ୍ଗାଲ୍* ବା ଫସଲ ଅମଳର ପର୍ବ ହେଉଛି ଏହାର ସବୁଠାରୁ ବଡ ପର୍ବ । ଜାନୁୟାରୀ ମାସରେ ଚାରିଦିନ ଧରି ଏହା ପାଳନ କରାଯାଏ । ଜାଲିକାଟୁ ବା ଷଣ୍ଢ ଲଢ଼େଇ ଏହି ପର୍ବର ଏକ ବିଶେଷ ଆକର୍ଷଣ । ଯାହା ପ୍ରତିଗ୍ରାମ ଓ ସହର ମାନଙ୍କରେ ଆୟୋଜନ କରାଯାଏ ।

*ଚିଥିରାଇ ଭିଝା* ମଦୁରାଇ ନଗରୀରେ ଅପ୍ରେଲ ମାସରେ ପାଳନ କରାଯାଏ । ଏହି ପର୍ବର ବିଶେଷତ୍ୱ ହେଉଛି ଯେ ଭଗବାନ ସୁନ୍ଦରେଶ୍ୱର (ଶିବ) ଓ ପାଣ୍ଡିଆନ୍ ରାଜକୁମାରୀ ମୀନାକ୍ଷୀଙ୍କର ବିବାହ ଅନୁଷ୍ଠିତ ହୁଏ ।

ଚିଦାମ୍ବର ର ଓ ମାମଲାପୁରମ୍ ବା ମହାବଳୀପୁରମ୍ ର ନୃତ୍ୟ ଦଳ ଏଠାକାର ସାଂସ୍କୃତିକ ଉତ୍ସବରେ ନୃତ୍ୟ ପରିବେଷଣ କରିଥାନ୍ତି । ସମୁଦ୍ରତଟ ଦେଶରେ ତ୍ରୟୋଦଶ ଶତାବ୍ଦୀର ପଲ୍ଲବ ରାଜାମାନଙ୍କ ଦ୍ୱାରା ନିର୍ମିତ ଏକକ ପଥର ଉପରେ ନିର୍ମିତ ଭାସ୍କର୍ଯ୍ୟ ସମ୍ମୁଖରେ ଏକ ମୁକ୍ତ ରଙ୍ଗମଞ୍ଚରେ ଏହି ନୃତ୍ୟ ଉତ୍ସବ ଅନୁଷ୍ଠିତ ହୁଏ ।

ଚିଦାମ୍ବରମ୍‌ଠାରେ ଅନୁଷ୍ଠିତ ନୃତ୍ୟ ମହୋତ୍ସବ ଭଗବାନ ନଟରାଜଙ୍କ ଉଦ୍ଦେଶ୍ୟରେ ସମର୍ପିତ ହୋଇ ତା'ଙ୍କ ମନ୍ଦିର ସମ୍ମୁଖରେ ଅନୁଷ୍ଠିତ ହୁଏ । ଏହି ମନ୍ଦିରର ସ୍ତମ୍ଭ ମାନଙ୍କରେ, ତାମିଲ ନାଡୁର ଶାସ୍ତ୍ରୀୟ ନୃତ୍ୟ ଭାରତନାଟ୍ୟମ୍‌ର ୧୦୮ ପ୍ରକାରର ନୃତ୍ୟ ମୁଦ୍ରା ଖୋଦିତ ହୋଇଛି ।

କିଛି ସମୟ ପରେ ମୁରୁଗାଁର ନିଦ ଭାଙ୍ଗିଲା । ସେ ଖୁବ୍ ଆଗ୍ରହର ସହିତ ତା'ର *ମୋଳାଗାଇ ଓ ପାଝାୟା ସୋରୁ* ପୁଡିଆ ଫିଟେଇଲା । ମାତ୍ର ସେଥିରେ କିଛି ନ ଥିବାର ଦେଖି ଭାଙ୍ଗି ପଡିଲା । ତା'ବଦଳରେ ଥିଲା ଗୋଟିଏ ଚକ୍‌ଚକିଆ *ଭେଙ୍ଗଲଶ ପାନାଇ* । ସେ କ୍ରୋଧ ଓ ହତାଶାରେ *ପାନାଇ*କୁ ତଳେ କଚାଡିଦେଲା, ଏଥିରୁ ଏକ ପ୍ରକାର ଝଣ୍‌ଝଣ୍ ଶବ୍ଦ ବାହାରିଲା । ତତ୍‌କ୍ଷଣାତ୍ ଜଣେ *ଦେବତାଇ* ବାହାରି ପଡିଲେ । ହଠାତ୍ ତା ସମ୍ମୁଖରେ ସଜ କାକରଧୁଆ *ଭାଜିଲ ଇଲାଇରେ* ଏକ ଚମତ୍କାର ଭୋଜନ ପ୍ରସ୍ତୁତ ହୋଇଗଲା । ମୁରୁଗାଁ ଆଶ୍ଚର୍ଯ୍ୟ ହୋଇଗଲା । କିନ୍ତୁ ସେ ଏତେ ମାତ୍ରାରେ ଭୋକିଲା ଥିଲା ଯେ, ଏଣୁତେଣୁ ପ୍ରଶ୍ନ ପଚାରି ସେ ସମୟ ନଷ୍ଟ କରିବାକୁ ଚାହୁଁ ନ ଥିଲା । ସେ ପେଟପୁରା ଭୋଜନ ଖାଇଲା ।

ସେ ଖାଇ ସାରିବା ପରେ, ଚାହୁଁ ଚାହୁଁ ସବୁ ସଫା ହୋଇଗଲା ଓ ପାନାଇ ଯେମିତି ଥିଲା, ସେମିତି ରହିଲା ସତେ ଯେପରି କିଛି ଘଟିନାହିଁ ! ମୁରୁଗାଁ କାଳ ବିଳମ୍ବ ନକରି ପାତ୍ରଟି ଉଠାଇ ଆଣିଲା ଓ ତରତର ହୋଇ ଘରକୁ ଫେରି ଆସିଲା ।

ତା'କୁ ଦେଖି ସେଲ୍‌ଭି ଆଦୌ ଖୁସୀ ହେଲା ନାହିଁ । ସେ ଜାଣିଥିଲା ଯେ, ଗୋଟିଏ ଦିନରେ



ଭାଗ୍ୟ ବଦଳେଇ ପାରିବା ଭଳି ମଣିଷ ମୁରୁଗାଁ ନୁହେଁ । ତେଣୁ ସେ ବିରକ୍ତରେ ଚିତ୍କାର କଲା: "*ଭାୟା ମୁଡ୍ରୁ!*" ମାତ୍ର ମୁରୁଗାଁ ତା'ଠାରୁ ଅଧିକ ଜୋର୍‌ରେ ଏମିତି ଚିତ୍କାର କଲା ଯେ, ସେଲ୍‌ଭିର ପାଟି ସେମିତି ଆଁ ହୋଇ ରହିଗଲା । ସେ ତା' କୁଡିଆ ଘର ମଝିରେ ପାତ୍ରଟି ରଖିଲା । ତା'ପରେ ସେ *ଭେଙ୍ଗାଲା ପାନ୍ନାଇକୁ* ଆଘାତ କରି *ଦେବତାଇକୁ* ଡାକି ସେମାନଙ୍କୁ ଭୋଜନ ଦେବା ପାଇଁ ଆଦେଶ ଦେଲା । ତତ୍‌କ୍ଷଣାତ୍ *ଦେବତାଇ* ବାହାରି ଆସିଲା । ଠିକ୍ ଆଗଥର ପରି କଅଁଳ ଛନଛନ *ଭାଜିଲ୍ ଇଲାଇ* ପାରି ଦେଇ ଦୁହିଁଙ୍କ ପାଇଁ ସୁମିଷ୍ଟ ଭୋଜନ ପରଷି ଦେଲା ।

ତା'ପରେ ମୁରୁଗାଁ ତା'ର ସ୍ତ୍ରୀ ଆଗରେ ସବୁକଥା ବର୍ଣ୍ଣନା କଲା ।

ତା' ପରଦିନ ସେଲ୍‌ଭି ଓ ମୁରୁଗାଁ ଗ୍ରାମର ସବୁ ଲୋକଙ୍କ ଦ୍ୱାରକୁ ଯାଇ ତା'ଙ୍କ ଘରକୁ ଭୋଜି ଖାଇ ଆସିବାକୁ ନିମନ୍ତ୍ରଣ ଜଣାଇଲେ । ଗ୍ରାମବାସୀମାନେ ଜାଣିଥିଲେ ଯେ ଏହି ଦମ୍ପତି ଖୁବ୍ ଗରିବ । ତେବେ ସେମାନେ କିପରି ଭୋଜି ଦେବେ, କେଉଁଠୁ ଏତେ ଅର୍ଥ ଆଣିବେ, ଏହି କୌତୁହଳରେ ସମସ୍ତେ ଆସିଲେ । ସେତେବେଳେ ସେମାନେ ଦେଖିଲେ ମୁରୁଗାଁର କୁଡିଆ ଖୁବ ସୁନ୍ଦରରେ ସଜା ହୋଇ ଭୋଜି ପାଇଁ ପ୍ରସ୍ତୁତ ହୋଇ ରହିଛି । ସେମାନଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ମୁରୁଗାଁ ଓ ସେଲ୍‌ଭି ଗୃହ ସମ୍ମୁଖରେ ଠିଆ ହୋଇ ସମସ୍ତଙ୍କୁ ସ୍ୱାଗତ ଜଣାଉଥିଲେ ଓ ହାତ ଯୋଡି କହୁଥିଲେ, "*ଭାଙ୍ଗା, ଭାଙ୍ଗା*" । ଅତିଥିମାନେ ବସି ପଡିବା ମାତ୍ରେ ସେମାନଙ୍କ ଭୋଜନ ପରଷା ଆରମ୍ଭ ହୋଇଗଲା । ଉଷୁମ ଉଷୁମ ବାମ୍ଫ ବାହାରୁଥିବା ସ୍ୱାଦିଷ୍ଟ ଖାଦ୍ୟ- ରାଗ ମସଲା ଦିଆ *ଭାଡାଇସ୍, ଆପାଲାମ୍, ପାଲ୍*

## ହସ୍ତଶିଳ୍ପ

ତାମିଲ ନାଡୁ ସାରା ବିଶ୍ୱରେ ସିଲ୍କ୍ ଶାଢ଼ୀ ପାଇଁ ସୁପ୍ରସିଦ୍ଧ । ଏହା କାଞ୍ଚିପୁରମ୍ ଠାରେ ଶୁଦ୍ଧ ମଲବେରୀ ରେଶମରୁ ପ୍ରସ୍ତୁତ ହୁଏ । ଏହି ଧଡି ମାନଙ୍କରେ ସୁନାର ଜରି କାମ ହୋଇଥାଏ । କାଞ୍ଚିପୁରମ୍ ସିଲକ୍ ବ୍ୟବସାୟ ୪୦୦ ବର୍ଷରୁ ପୁରୁଣା ବୋଲି କୁହାଯାଏ । ସେଥିପାଇଁ କାଞ୍ଚିପୁରମକୁ ଯେଉଁ ସବୁ ପର୍ଯ୍ୟଟକ ଆସନ୍ତି ସେମାନେ ସମସ୍ତେ ପ୍ରାୟ ଶାଢୀ କିଣିଥାନ୍ତି ।





*ପାୟସମ୍, ଗରମ ସମ୍ବର,* ଚାରି ପ୍ରକାରର ତରକାରୀ, ଆଭିୟାଲ୍... ଏପରି ଭୋଜି ଗ୍ରାମରେ ଆଗରୁ କେହି କେବେ ଖାଇ ନଥିଲେ ।

ପୁଲିୟାମ୍ପଟ୍ଟୀର ଧନୀ ସାହୁକାର ଭୋଜିକୁ ନ ଆସି କୌତୁହଳ ଓ ଇର୍ଷାରେ ଜଳି ପୋଡି ଯାଉଥାଏ । ଦିନେ ସେ ମୁରୁଗାଁର ଘରେ ଆସି ପହଞ୍ଚିଲା ଓ ସବୁ ସତକଥା ଜାଣିଗଲା । ତା'ପରେ ସେ ସ୍ଥିର କଲା ଯେ, ସେ ମଧ୍ୟ ଏପରି ଗୋଟିଏ *ପାନାଇ* ହାସଲ କରିବ । ସେ ତା'ର ସ୍ତ୍ରୀକୁ କହି ଗୋଟିଏ ଦାମିକା ଭୋଜନ ପ୍ରସ୍ତୁତ କରାଇଲା ଓ ତା'କୁ ଏକ ବିରାଟ ବହୁଥାକ ବିଶିଷ୍ଟ ଜଳଖିଆ ଡବାରେ ସଜାଡି ରଖିଲା । ତା'ପରେ ଯେଉଁ ଗଛରେ ବ୍ରହ୍ମ ରାକ୍ଷସନ୍ ରହୁଥିଲା, ସେଠାକୁ ବାହାରିଲା ।

କିଛି ସମୟ ପରେ, ତା'କୁ ଭୁଲ ଲାଗିଲା । ''କୁଆଡେ ଗଲା ସେ ବଦମାସ୍ *ବ୍ରହ୍ମରାକ୍ଷସ୍ନ*?

## ମନ୍ଦିର

ତାମିଲନାଡୁ ତା'ର ମନ୍ଦିର ମାଳା ପାଇଁ ଖୁବ୍ ପ୍ରସିଦ୍ଧ । ତାଞ୍ଜୋଭୁରର ବିରାଟ ମନ୍ଦିର ବୃହଦେଶ୍ୱର ମନ୍ଦିର, ଏହାର ଭାସ୍କର୍ଯ୍ୟ କଳା ପାଇଁ ଖୁବ୍ ଜଣାଶୁଣା । ଏହା ରାଜ ରାଜ ଚୋଳ-୧ (୯୮୫-୧୦୧୩ ଖ୍ରୀଷ୍ଟାବ୍ଦ)ଙ୍କ ଦ୍ୱାରା ନିର୍ମିତ । ଏହି ମନ୍ଦିରର ଚୂଡା (ବିମାନମ୍) ଗୋଟିଏ ବିରାଟ ମୁଗୁନି ପଥର ଦ୍ୱାରା ନିର୍ମିତ ହୋଇ ଏପରି ସ୍ଥାପିତ ଯେ, ଏହାର ଛାଇ କେବେ ତଳେ ପଡେ ନାହିଁ ।

ମଦୁରାଇର ମୀନାକ୍ଷୀ-ସୁନ୍ଦରେଶ୍ୱର ମନ୍ଦିର ପର୍ଯ୍ୟଟକମାନଙ୍କର ଅନ୍ୟ ଏକ ଆକର୍ଷଣ । ଏହା ଦେବୀ ମୀନାକ୍ଷୀ ଓ ଭଗବାନ ଶିବଙ୍କ ଉଦ୍ଦେଶ୍ୟରେ ସମର୍ପିତ ।

କାଞ୍ଚିପୁରମ୍‌ର ଏକାମ୍ବରେଶ୍ୱରମ୍ ମନ୍ଦିରରେ ଶୈବ୍ୟ ଉପାସନା କରାଯାଏ । ଯେଉଁଠାରେ



ପଞ୍ଚଭୂତ ମଧ୍ୟରୁ 'ପୃଥିବୀ' ଭାବରେ ଶିବଙ୍କୁ ଆରାଧନା କରାଯାଏ ।

ପ୍ରଦେଶର ଅନ୍ୟ ମନ୍ଦିରମାନଙ୍କ ମଧ୍ୟରେ ଶ୍ରୀରଙ୍ଗମ୍‌ର ଶ୍ରୀରଙ୍ଗନାଥ ମନ୍ଦିର ଓ କୁମ୍ଭକୋଣମ୍, ରାମେଶ୍ୱରମ୍, ଚିଦାମ୍ବରମ ଠାରେ ଓ ଏହାର ଆଖପାଖରେ ଥିବା ମନ୍ଦିର ସବୁ ପ୍ରସିଦ୍ଧ ଅଟେ ।

ଏତେବେଳ ହେଲା ଯେ କାହିଁକି ଆସୁନାହିଁ ?''
ସେ ଚିତ୍କାର କଲା ଓ ତା'କଥା *ବ୍ରହ୍ମରାକ୍ଷସମାନଙ୍କୁ* ଶୁଭିଲା । ସେ ଏହି ଲୋକକୁ ପାନେ ମଜା ଚଖାଇବା ପାଇଁ ସ୍ଥିର କଲା । ଖୁବ୍ ଶୀଘ୍ର ସାହୁକାରକୁ ନିଦ ଲାଗିଗଲା । *ବ୍ରହ୍ମରାକ୍ଷସମାନେ* ଜଳଖିଆ ପାତ୍ର କାଢ଼ିନେଇ ତା' ବଦଳରେ ଗୋଟିଏ ବେତର ଝୁଡି ରଖିଦେଲା । ''ଏହି *ମୁଙ୍ଗିଲ୍ କୁଡାଇ* ତତେ ଠିକ୍ ବୁଦ୍ଧି ଶିଖାଇବ !'' ସେ କହିଲା ।

ସାହୁକାର ନିଦରୁ ଉଠି ବଡ ଆଶାରେ ଚାରିଆଡକୁ ଚାହିଁଲା । ଯେତେବେଳେ ସେ ବେତର ଝୁଡି ଦେଖିଲା, ସେ ସାମାନ୍ୟ ଆଶ୍ଚର୍ଯ୍ୟ ହୋଇଗଲା । ଭାବିଲା, ଏହି ଝୁଡିରୁ ସେ ଖୁବ୍ ଭଲ ଭୋଜନ ପାଇ ପାରିବ ।

ତା'ପରଦିନ ସେ ତା'ର ବନ୍ଧୁମାନଙ୍କୁ ଏକ ଭୋଜି ପାଇଁ ଡକାଇଲା । ଯେତେବେଳେ ସମସ୍ତେ ଏକାଠି ହେଲେ, ଖୁବ୍ ଉତ୍ସାହର ସହିତ ସେ ଝୁଡିକୁ ଆଦେଶ ଦେଲା, ''ମୋର ଅତିଥିମାନଙ୍କୁ ଭୋଜନ ପରିଷିଦିଅ ।'' କିନ୍ତୁ ତା'ର ଦୁର୍ଭାଗ୍ୟକୁ, ଝୁଡିରୁ ଚାରିଜଣ ବିରାଟକାୟ ଲୋକ ବାହାରିଲେ, ସେମାନଙ୍କ ବଡ ବଡ ନିଶ ଥିଲା । ସେମାନେ ସେହି ଧନୀଲୋକ ଓ ତା'ର ବନ୍ଧୁମାନଙ୍କୁ ଧରିଲେ ଓ ସେମାନଙ୍କର ମୁଣ୍ଡ ଲଣ୍ଡା କରିଦେଲେ, ଭୋକ ଉପାସରେ ବିଦା କରିଦେଇ । ''*ଆୟୋ ! ମୋଟାଇ ଆଡିଚୁଡୁଛେ !*'' ବିଚରା ସାହୁକାର ଚିତ୍କାର କରୁଥିଲା ।

ଏପରି ଏକ ଭୋଜି କଥା ମଧ୍ୟ ଗ୍ରାମରେ ସମସ୍ତେ କୁହାକୁହି ହେଲେ । ଲଣ୍ଡାରୁ ରକ୍ଷାପାଇବା ପାଇଁ ସାହୁକାର ଏକ ଲମ୍ବା ତୀର୍ଥ ଯାତ୍ରାରେ ବାହାରିଗଲା !



## ପର୍ଯ୍ୟଟନ ସ୍ଥଳୀ

ତାମିଲନାଡୁ ପ୍ରଦେଶର ଚାରିଆଡେ ଥିବା ମନ୍ଦିର ଭିନ୍ନ ଏଠାରେ ଅନେକ ସୁନ୍ଦର ପର୍ଯ୍ୟଟନ ସ୍ଥଳୀ ରହିଛି । ଚେନ୍ନାଇଠାରେ ଥିବା ମାରିନା ବିଚ୍ ପୃଥିବୀର ବୃହତ୍ତମ ସମୁଦ୍ରବେଳା । ଏହାର ପାଖାପାଖି ଅନେକ ସ୍ଥଳ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିଥାଏ ।

ହୋଗେନାକାଲ୍ ତାମିଲ ନାଡୁ ଓ କର୍ଣ୍ଣାଟକର ସୀମାରେ ଥିବା ଜଳପ୍ରପାତ, ଅନ୍ୟତମ ପ୍ରର୍ଯ୍ୟଟନ ସ୍ଥଳୀ ଅଟେ । କାବେରୀ ନଦୀ ଏଠାରେ ଦୁଇ ଧାରା ରେ ବିଭକ୍ତ ହୋଇଛି, ଗୋଟିଏ ଧାରା ବହି ଆସୁଛି ଓ ଅନ୍ୟ ଗୋଟିଏ ଧାରା ଏକ ସୁନ୍ଦର ଜଳ ପ୍ରପାତରେ ପରିଣତ ହୋଇଛି । ଜଙ୍ଗଲ ପଥ ଦେଇ ଅନେକ ବୃକ୍ଷଲତା ସଂସ୍ପର୍ଶରେ କାବେରୀ ନଦୀ ବୋହି ଆସୁଥିବାରୁ ତା'ର ଜଳରେ ସ୍ନାନ କରିବା ହିତକର ମନେ କରାଯାଏ ।

# ଭାରତ ଆବିଷ୍କାର

## ପ୍ରଶ୍ନୋତ୍ତରୀ

ଆଉ ଏକ ସାଧାରଣତନ୍ତ୍ର ଦିବସ- ୫୧ତମ ଦିବସ ଜାନୁୟାରୀ୨୬, ୨୦୦୨ରେ ଆମେ ପାଳନ କରିବା । ଏହି ଦିବସରେ ଭାରତ ଏକ ସ୍ୱାଧୀନ, ସାର୍ବଭୌମ, ସମାଜବାଦୀ, ଗଣତନ୍ତ୍ର ରାଷ୍ଟ୍ର ରୂପେ ଆତ୍ମପ୍ରକାଶ କରିଥିଲା । ଏହା ସମ୍ଭବ ହୋଇଥିଲା, ସ୍ୱାଧୀନତା ହାସଲ ପାଇଁ ବିଦେଶୀ ଶାସକଙ୍କ ବିରୁଦ୍ଧରେ ବହୁ ବର୍ଷର ସଂଗ୍ରାମର ପରେ । ଏହି ମାସ ର ପ୍ରଶ୍ନୋତ୍ତରୀ ବିଭିନ୍ନ ଦୃଷ୍ଟିକୋଣରୁ ସ୍ୱାଧୀନତାର ଏକ ରୋମନ୍ଥନ । ଯେଉଁମାନେ ଗତବର୍ଷର 'ଜାନୁୟାରୀ-ଏପ୍ରିଲ' ସଂଖ୍ୟାରେ ପ୍ରକାଶିତ 'ବିଂଶ ଶତାବ୍ଦୀରେ ଭାରତ' ପ୍ରସଙ୍ଗକୁ ଭଲଭାବେ ପଢ଼ିଥିବେ, ସେମାନଙ୍କ ଜିଭ ଅଗରେ ରହିଛି ଏହାର ଅନେକ ଉତ୍ତର ।

୧. ''ଦି ଇଣ୍ଡିଆନ୍ ଷ୍ଟ୍ରଗଲ୍ ପୁସ୍ତକର ରଚୟିତା କିଏ ?

୨. 'ସତ୍ୟାଗ୍ରହ' ଶବ୍ଦ କିଏ ପ୍ରଥମେ ପ୍ରୟୋଗ କରିଥିଲେ ?

୩. କେବେ ଓ କେଉଁଠାରେ ପଣ୍ଡିତ ଜବାହାରଲାଲ ନେହେରୁ ପ୍ରଥମ ଥର ଗାନ୍ଧିଜୀଙ୍କୁ ଭେଟିଥିଲେ ?

୪. ତିନିଜଣ ଜାତୀୟତାବାଦୀ ନେତା ଲାଲ୍, ବାଲ୍, ପାଲ୍ ନାମରେ ଖୁବ୍ ଜଣାଶୁଣା । ସେମାନଙ୍କର ନାମ କ'ଣ ?

୫. କେବେ ବଙ୍ଗଦେଶ ବଙ୍ଗ ଓ ପୂର୍ବବଙ୍ଗରେ ବିଭାଜିତ ହୋଇଥିଲା ?

୬. କେବେ ଇଷ୍ଟ ଇଣ୍ଡିଆ କମ୍ପାନୀ ବ୍ରିଟିଶ ସରକାରଙ୍କୁ କ୍ଷମତା ହସ୍ତାନ୍ତର କରିଥିଲା ?

୭. କେବେ ଓ କେଉଁଠାରେ ଭାରତୀୟ ଜାତୀୟ କଂଗ୍ରେସ୍ 'ସ୍ୱାଧୀନ ଭାରତ' ପାଇଁ ପ୍ରସ୍ତାବ ଗ୍ରହଣ କରିଥିଲା ?

୮. ସାଇମନ୍ କମିଶନ୍ କେବେ ଭାରତ ଆସିଥିଲେ ? ତା'ଙ୍କର ଲକ୍ଷ୍ୟ କ'ଣ ଥିଲା ?

୯. କେବେ ଅନ୍ତରୀଣ ସରକାର ଗଠିତ ହୋଇଥିଲା ?

୧୦. ''ସ୍ୱରାଜ ମୋର ଜନ୍ମଗତ ଅଧିକାର, ଏବଂ ମୁଁ ତାହା ହାସଲ କରିବି ।'' ଏହି ପ୍ରସିଦ୍ଧ ଉକ୍ତି କାହାର ?

(ଉତ୍ତର ପରବର୍ତ୍ତୀ ସଂଖ୍ୟାରେ)

### ଡିସେମ୍ବର ମାସର ପ୍ରକାଶିତ ପ୍ରଶ୍ନର ଉତ୍ତର

୧. ମେ,୧୧,୨୦୦୦ । ଶିଶୁର ନାମ ଦିଆଯାଇଥିଲା ଆସ୍ଥା ।

୨. କାଞ୍ଚନଜଙ୍ଘା-୮,୫୯୮ ମିଟର, ୨୦,୨୦୮ଫୁଟ ।

୩. ସିନ୍ଧୁ ଓ ଏହାର ଉପନଦୀ- ଝେଲମ୍, ଚେନାବ୍, ରବି ଓ ସତ୍‌ଲେଜ୍

୪. ଉତ୍ତରାଞ୍ଚଳ-ଡେରାଡୁନ୍, ଛତିଶଗଡ-ରାୟପୁର, ଝାଡଖଣ୍ଡ-ରାଞ୍ଚି

୫. ତାମିଲନାଡୁ-ଶ୍ରୀମତୀ ଜାନକୀ ରାମଚନ୍ଦ୍ରନ୍ ଓ ସୁଶ୍ରୀ ଜୟଲଳିତା ।

# ଭାରତ ଗାଥା

ଏକ ମହାନ ସଭ୍ୟତାର ଝଲକ -
ଯୁଗେ ଯୁଗେ ସତ୍ୟ ପାଇଁ ଏକ ମହାର୍ଘ ଅନ୍ୱେଷଣ

## କାଳିଦାସଙ୍କ କୁହୁକ ସ୍ୱପ୍ନ



''ଜେଜେ''- ସ୍କୁଲରୁ ଫେରି ବଡ ଉତ୍ସୁକତାର ସହ ସଂଦୀପ ଡାକ ପକାଉଥିଲା । ଆମେ କାଳିଦାସଙ୍କର ଏକ ନାଟକ ମଞ୍ଚସ୍ଥ କରିବାକୁ ଯାଉଛୁ, ଆମ ସ୍କୁଲର ବାର୍ଷିକ ଉତ୍ସବରେ । ଆମକୁ ଆସନ୍ତା କାଲି ଅଡିଟୋରିୟମ୍‌ରେ ଉପସ୍ଥିତ ହେବାକୁ କୁହାଯାଇଛି । କାଲି ତ' ରବିବାର । ବୋଧହୁଏ ଗୁରୁଜୀ କାଲି ଆମକୁ ଏଥର ବିଭିନ୍ନ ଭୂମିକା ବାଣ୍ଟିଦେବା ପାଇଁ ଡ଼କାଇଛନ୍ତି ।''

''ତାହା କ'ଣ *ଅଭିଜ୍ଞାନ ଶାକୁନ୍ତଳମ୍ ?*'' ପ୍ରଫେସର୍ ଦେବନାଥ ପଚାରିଲେ ।

''ଠିକ୍, ଜେଜେ, କିନ୍ତୁ ଆପଣ କେମିତି ଜାଣି ପାରିଲେ ?''

''ଏଥିରେ ମୋର କିଛି ବାହାଦୁରୀ ନାହିଁ, କାରଣ ଏହା ହେଉଛି କାଳିଦାସଙ୍କର ସବୁଠାରୁ ଲୋକପ୍ରିୟ ନାଟକ । ଅନ୍ୟ ଦୁଇଟି, *'ବିକ୍ରମୋର୍ବଶୀୟମ୍'* ଓ *'ମାଳବିକାଗ୍ନିମିତ୍ରମ୍'* । ମଞ୍ଚରେ ଅଭିନୟ କରିବା ଏତେ ସହଜ ନୁହେଁ ଓ ତାହାର ଅନେକ ମାଧୁର୍ଯ୍ୟ ଲୋପ ପାଇଯିବାର ସମ୍ଭାବନା ରହିଛି, ଯେତେବେଳେ ସଂସ୍କୃତ ବ୍ୟତୀତ ଅନ୍ୟ କୌଣସି ଭାଷାରେ ଏହାକୁ ଅଭିନୟ କରାଯିବ । ଆଚ୍ଛା, ତୁମେ ମାନେ ଏହାକୁ ମୂଳ ସଂସ୍କୃତ ଭାଷାରେ ଅଭିନୟ କରୁଛ ତ ?''

''ନା, ବାବା, ନାଃ..''

''ସଂସ୍କୃତରେ ଅଭିନୟ କରିବା ଶୁଣି ତୁମେ



ଏତେ ଭୟଭୀତ ହୋଇ ପଡୁଛ କାହିଁକି ?''

''ଏହା, ଏତେ କଷ୍ଟ !''

''ଏହା ଏକ ପୁରୁଣାକାଳିଆ ଧାରଣା । ଏହା ତୁମମାନଙ୍କୁ ଖୁବ କଠିନ ମନେ ହେଉଛି, କାରଣ ତୁମ ଶିକ୍ଷକ ପୁରୁଣା ପଦ୍ଧତି ଅନୁସରଣ କରି ତୁମକୁ ଏହି ବିଷୟ ପଢ଼ାଉଛନ୍ତି । ସଂସ୍କୃତରୁ ତୁମେ ଅସାଧାରଣ ଆନନ୍ଦ ଲାଭ କରିପାରିବ । ତୁମେ ନାଟକରେ କେଉଁ ଭୂମିକା ନେବାକୁ ଯାଉଛ ?''

''ମୁଁ ଜାଣିନି, ଜେଜେ, ତାହା କାଲି ସ୍ଥିର ହେବ । ଆପଣ ମୋତେ ସଂକ୍ଷିପ୍ତରେ ତା'ର କାହାଣୀ କହିଦେଲେ, ଖୁବ୍ ଭଲ ହୁଅନ୍ତା । ତା'ହେଲେ ମୁଁ କେଉଁ ଭୂମିକା ନେବି ସ୍ଥିର କରିପାରନ୍ତି...।''

''ଏଥରେ ସ୍ଥିର କରିବାର କ'ଣ ଅଛି ? ସେଇ ନାଟକରେ ଗୋଟିଏ ବିଦୂଷକ କି ହାସ୍ୟରସିକର ଭୂମିକା ଥିବ । ସେଇ ରୋଲ୍ ପାଇଁ ତୁମେ ଉପଯୁକ୍ତ ।'' ଚାମେଲୀ ମଝିରେ କହିଲା । ସେ ସେଇମାତ୍ର ସ୍କୁଲରୁ ଆସି ପହଞ୍ଚିଥାଏ ।

''ତେବେ ତୁ କାହାଣୀ ଜାଣିଛୁ । ଏୟା ତ ?'' ଠିକ୍ ଅଛି, ତୁ ଜେଜେଙ୍କ ପାଖରୁ ଆଉଥରେ କାହାଣୀ ଶୁଣିବାର ଆବଶ୍ୟକତା ନାହିଁ ।'' ସଂଦୀପ ତା'ର ସାନ ଭଉଣୀକୁ ବଡ ପାଟିରେ କହିଲା ।

''ମୋ କଥା ମାନି ତୁମେ ଦୁଇଜଣ ଏଠାରୁ ଯାଇ ସ୍କୁଲ୍ ପୋଷାକ ବଦଳାଇ ଦିଅ । ଜଳଖିଆ ଖାଅ, ଆଉ ପୁଣି ଏଠାକୁ ଆସ । ସେମାନଙ୍କ ମାଆ ଜୟଶ୍ରୀ କହିଲେ ।

''ମୁଁ ଏହାକୁ ସମର୍ଥନ ଜଣାଉଛି ।'' ପ୍ରଫେସର୍ କହିଲେ ।

ପିଲା ଦୁହେଁ ସେଠାରୁ ସ୍କୁଲ ବ୍ୟାଗ୍ ଧରି ଧାଇଁ ଗଲେ, ଆଉ ମାତ୍ର ଅଧ ଘଣ୍ଟାଏ ଭିତରେ ସବୁ କାମ ସାରି ସେଠାରେ ହାଜର ହୋଇଗଲେ ।

ତା'ପରେ ସେ ତା'ଙ୍କର ବର୍ଣ୍ଣନା ଆରମ୍ଭ କଲେ ।

କାହାଣୀ ଏକ ଚମତ୍କାର ଘଟଣାରୁ ଆରମ୍ଭ ହେଲା । ହସ୍ତିନାପୁରର ରାଜା ଦୁଷ୍ମନ୍ତ ଶିକାର ଉଦ୍ଦେଶ୍ୟରେ ବାହାରିଥିଲେ । ଗୋଟିଏ ହରିଣର ପିଛା କରୁ କରୁ ସେ ମହର୍ଷି କଣ୍ୱଙ୍କର ଆଶ୍ରମ ପାଖରେ ଆସି ପହଞ୍ଚିଗଲେ । ଠିକ୍ ସେତିକି ବେଳକୁ ଋଷି ବିଶ୍ୱାମିତ୍ର ଓ ଅପ୍ସରା ମେନକାଙ୍କର କନ୍ୟା ଓ ମହର୍ଷି କଣ୍ୱଙ୍କ ଦ୍ୱାରା ପ୍ରତିପାଳିତା ସୌନ୍ଦର୍ଯ୍ୟମୟୀ ଶକୁନ୍ତଳାକୁ ଗୋଟିଏ ଦୁଷ୍ଟ ମହୁମାଛି ବିବ୍ରତ କରୁଥିଲା । ତା'ର ସଙ୍ଗିନୀ, ଚତୁର ଭାବେ ମନ୍ତବ୍ୟ ଦେଉଥିଲା ଯେ, ରାଜା ଦୁଷ୍ମନ୍ତଙ୍କ ଶାସନ କାଳରେ, କିଏ ଏପରି ଜଣେ ଅବଳାକୁ ହଇରାଣ କରିବାକୁ ସାହସ କରିପାରେ !'' ଦେଖ, ଠିକ୍ ସେତିକିବେଳେ ନିଜେ ରାଜା ଦୁଷ୍ମନ୍ତ ସେହି ବାଳିକାକୁ ସାହାଯ୍ୟ କରିବାକୁ ଆଗେଇ ଆସିଲେ !



କଣ୍ୱ ଆଶ୍ରମରେ ଅନୁପସ୍ଥିତ ଥିଲେ । ତେଣୁ ତା'ଙ୍କ କନ୍ୟାକୁ ରାଜକୀୟ ଅତିଥିଙ୍କର ପରିଚର୍ଯ୍ୟା କରିବାକୁ ପଡିଲା । ରାଜା ବିଶ୍ରାମ ନେବାବେଳେ ଆଶ୍ରମରେ ରହିଲେ । ସେ ସେଠାରେ ରହି ବଣ୍ୟଜନ୍ତୁ ଓ ଗୋଟିଏ ରାକ୍ଷସ ଗୋଷ୍ଠୀଙ୍କୁ ସେହି ଅଞ୍ଚଳରୁ ବିତାଡିତ କଲେ । ଏତେ ବେଳକୁ ଶକୁନ୍ତଳା ଓ ଦୁଷ୍ମନ୍ତଙ୍କ ମଧ୍ୟରେ ହୃଦୟର ବିନିମୟ ଘଟି ସାରିଥିଲା ଓ ଅତି ସାଧାରଣ ରୀତିରେ ସେମାନେ ବିବାହ କରିସାରିଥିଲେ ।

ଶକୁନ୍ତଳାକୁ ନିଜର ସବୁଠାରୁ ମୂଲବାନ ମୁଦ୍ରିକା ଉପହାର ଦେଇ ରାଜା ତା'ଙ୍କ ରାଜଧାନୀକୁ ଫେରି ଆସିଲେ । କଣ୍ୱଙ୍କ ଅନୁପସ୍ଥିତିରେ ସେ ତା'ଙ୍କୁ ସାଙ୍ଗରେ ନେଇ ଆସିବା ସମ୍ଭବ ନ ଥିଲା ।

ଥରେ ଶକୁନ୍ତଳା ଏକା ଏକା ଦୁଷ୍ମନ୍ତଙ୍କ ସ୍ମୃତିରେ ବିଭୋର ହୋଇ ବସିଛନ୍ତି, ସେଠାରେ ଆସି ପହଞ୍ଚିଲେ କ୍ଷଣକୋପୀ ଋଷି ଦୁର୍ବାସା । ଶକୁନ୍ତଳା, ନିଜ ଭାବନା ରାଜ୍ୟରେ ବିଚରଣ [illegible]ଲେ । ସେ ତା'ଙ୍କର ଡାକ ଶୁଣି ପାରିଲେ ନାହିଁ କିମ୍ବା ତା'ଙ୍କ କଥାର ଉତ୍ତର ଦେଇ ପାରିଲେ ନାହିଁ । ଏହା ଦୁର୍ବାସାଙ୍କ ମନରେ କ୍ରୋଧ ଜାତ କଲା ଓ ସେ ଅଭିଶାପ ଦେଲେ ଯେ, ଯାହା ବିଷୟରେ ଚିନ୍ତା କରି ସେ ଏତେ ଅନ୍ୟମନସ୍କ ରହୁଛନ୍ତି, ସେ ତାଙ୍କୁ ଦେଖିଲେ ମଧ୍ୟ ଚିହ୍ନି ପାରିବେ ନାହିଁ ।''

କଣ୍ୱ ମୁନି ଫେରି ଆସିବା ପରେ, ତାଙ୍କ କନ୍ୟା ରାଜା ଦୁଷ୍ମନ୍ତଙ୍କୁ ପତି ଭାବେ ମନୋନୀତ କରିଥିବା ଜାଣି ଖୁବ୍ ଖୁସି ହେଲେ । ଶକୁନ୍ତଳା ମା' ହେବାକୁ ଯାଉଥିଲେ । ମୁନି ତା'ଙ୍କୁ ତା'ଙ୍କ ପତିଙ୍କ ନିକଟକୁ ପଠାଇ ଦେଲେ ।

ମାତ୍ର କି ବିଡମ୍ବନା ! ଅଭିଶାପର ପ୍ରଭାବରୁ ରାଜା ତା'ଙ୍କୁ ଚିହ୍ନି ପାରିଲେ ନାହିଁ । ଶକୁନ୍ତଳା ତା'ଙ୍କ ପାଖରେ ଥିବା ସନ୍ତକ ମୁଦ୍ରିକାଟିକୁ ମଧ୍ୟ ହଜାଇ ଦେଇଥିଲେ । ନୌକାରେ ବସି ନଦୀ ପାର ହେଉଥିବା ବେଳେ କୌତୁକରେ ଚଳନ୍ତା ପାଣିରେ ହାତ ମାରୁ ମାରୁ ମୁଦ୍ରିକାଟି ଜଳରେ ପଡି

ଯାଇଥିଲା ।

ଶକୁନ୍ତଳା ଗଭୀର ମର୍ମାହତ ହେଲେ । ତା'ଙ୍କର ଅପ୍‌ସରୀ ମାତା ମେନକା ତା'ଙ୍କୁ ନିଜ ଦାୟିତ୍ୱରେ ରଖିଲେ । ଅରଣ୍ୟରେ ସେ ଏକ ପୁତ୍ର ସନ୍ତାନକୁ ଜନ୍ମ ଦେଲେ ।

ଥରେ, ଜଣେ ଧୀବର ଗୋଟିଏ ମାଛ ଭିତରୁ ସେହି ମୁଦ୍ରିକା ପାଇଲା । ସେ ତାହା ଆଣି ରାଜାଙ୍କ ସମ୍ମୁଖରେ ରଖିଲା । ମୁଦ୍ରିକା ଦେଖିବା କ୍ଷଣି, ରାଜାଙ୍କର ମାନସ ପଟରେ ଶକୁନ୍ତଳାଙ୍କ ସ୍ମୃତି ଜାଗି ଉଠିଲା । ସେ ଖୁବ୍ ଅନୁତାପ କଲେ । କିନ୍ତୁ କାହାନ୍ତି ଶକୁନ୍ତଳା ? ରାଜା ମନସ୍ତାପରେ ଦିନ କାଟୁଥିଲେ । ତା'ଙ୍କ ପ୍ରତି କରିଥିବା ଅନ୍ୟାୟ କଥା ଭାବି ଦୁଃଖରେ ଭାଙ୍ଗି ପଡୁଥିଲେ ।

ଥରେ ସେ କାଶ୍ୟପ ଋଷିଙ୍କୁ ସାକ୍ଷାତ କରିବାକୁ ଯାଇଥିଲେ । ସେଠାରେ ଗୋଟିଏ ଶିଶୁକୁ ସିଂହ ମାନଙ୍କ ସହିତ ଖେଳୁଥିବାର ଦେଖି ସେ ବିସ୍ମିତ ହେଲେ । ସେ ଶିଶୁ, ଅନ୍ୟ କେହି ନୁହେଁ, ତାଙ୍କର ପୁତ୍ର ଥିଲା । ତା'ର ମାଧ୍ୟମରେ ସେ ଶକୁନ୍ତଳାଙ୍କୁ ଭେଟିଲେ । ଯାହାକୁ ସେ କିଛି କ୍ଷଣ ପାଇଁ ସମ୍ପୂର୍ଣ୍ଣ ପାଶୋରି ଦେଇଥିଲେ । ସେହି ଶକୁନ୍ତଳାଙ୍କ ସହିତ ତା'ଙ୍କର ସୁଖଦ ପୁର୍ନମିଳନ ଘଟିଲା ।

ସେମାନଙ୍କର ପୁତ୍ର ଭରତ ଜଣେ ବିଖ୍ୟାତ ରାଜା ହେଲେ ଯାହାଙ୍କ ନାମ ଅନୁସାରେ, ଆମ ଦେଶର ନାମ ଭାରତବର୍ଷ ହୋଇଛି ବୋଲି ବିଶ୍ୱାସ କରାଯାଏ ।

ଜେଜେ ଦେବନାଥ, ଏହି କାହାଣୀ ବର୍ଣ୍ଣନା କରିବା ପରେ ଶେଷରେ କହିଲେ: ଏହା ସମ୍ବନ୍ଧରେ ଜଣେ ବିଖ୍ୟାତ ଜର୍ମାନୀ କବି କ'ଣ କରିଛନ୍ତି ତୁମେ ଜାଣ କି ? ତାହା ହେଉଛି

''ଯୌବନ-କୁସୁମ ଉପଭୋଗ ପାଇଁ ମନେ ଜାଗିଛି କି ଆଶା

ଅବା ପରିପକ୍ୱତାର ସ୍ୱାଦ !

କିଛି ଚମ୍‌କାର ଅନୁଭବ, ଅବା ସମ୍ମୋହନ ଗୀତି

ଲଭିବାକୁ ଥାଏ ଯଦି ଆଶା

ଚାହୁଁଥାଅ କରିବାକୁ ସ୍ୱର୍ଗ ଓ ପୃଥିବୀର ବ୍ୟାଖ୍ୟା

ଗୋଟିଏ ଶବ୍ଦହିଁ ଯଥେଷ୍ଟ

ଶକୁନ୍ତଳା ପାଠ କର, ମୁଁ କହୁଛି ପୂର୍ଣ୍ଣ ହେବ ସବୁ ମନସ୍କାମ ।''

- ବିଶ୍ୱାବସୁ





# ଦେବୀ ଭାଗବତ

ତ୍ୱଷ୍ଟୁ ପ୍ରଜାପତି ସବୁ ଦେବତାଙ୍କ ଠାରୁ ମହାନ୍ ଥିଲେ । ସେ ଘୋର ତପସ୍ୟା କରିଥିଲେ । ସେ ଇନ୍ଦ୍ରଙ୍କୁ ବିରୋଧ କରିଥିଲେ । ତେଣୁ ସେ ତିନି ମସ୍ତକଯୁକ୍ତ ବିଶ୍ୱରୂପର ସୃଷ୍ଟି କଲେ । ବିଶ୍ୱରୂପର ବୟସ ଧୀରେ ଧୀରେ ବଢ଼ିଲା । ସେ ତା'ର ତିନୋଟି ଶିରରେ ଏକା ସମୟରେ ତିନି ପ୍ରକାର କାମ କରୁଥିବାର ଦେଖି ମୁନିଗଣ ତା'ର ଭୁରି ଭୁରି ପ୍ରଶଂସା କରିବାକୁ ଲାଗିଲେ । ସେ ଗୋଟିଏ ମୁହଁରେ ବେଦ ପଠନ କରୁଥାଏ ତ ଅନ୍ୟ ମୁହଁରେ ମଦ୍ୟପାନ କରୁଥାଏ । ତୃତୀୟ ମୁହଁରେ ସଂସାରରେ ଘଟୁଥିବା ସମସ୍ତ ଘଟଣା ଦେଖୁଥାଏ ।

ବିଶ୍ୱରୂପ ପଞ୍ଚାଗ୍ନି ମଧ୍ୟରେ ତପସ୍ୟା କରିବାକୁ ଲାଗିଲା । ଗୋଟିଏ ପାଦରେ ଠିଆ ହୋଇ ଶୀତକାଳରେ ଜଳ ମଧ୍ୟରେ, ଗ୍ରୀଷ୍ମକାଳରେ ଅଗ୍ନି ମଧ୍ୟରେ, କୌଣସି ଖାଦ୍ୟପେୟ ଗ୍ରହଣ ନକରି ସେ ତପସ୍ୟାରେ ମଗ୍ନ ରହିଲା । ଇନ୍ଦ୍ର ଏହା ସବୁ ଲକ୍ଷ୍ୟ କରି ଭାବିଲେ ଯେ, ସେ ତା'ଙ୍କର ପଦ ହରଣ କରିବା ପାଇଁ ଏ ସବୁ କରୁଛି । ସେ ତା'ର ତପସ୍ୟା ଭଙ୍ଗ କରିବାକୁ ସ୍ଥିର କଲେ, ଏଥି ନିମନ୍ତେ ସେ ଅପସ୍‌ରାମାନଙ୍କୁ ପଠାଇଲେ । କିନ୍ତୁ ସେମାନଙ୍କର ନୃତ୍ୟଗୀତର କୌଣସି ପ୍ରଭାବ ବଶ୍ୱରୂପ ଉପରେ ପଡିଲା ନାହିଁ । ସେମାନେ ଇନ୍ଦ୍ରଙ୍କ ନିକଟକୁ ଫେରି ଆସିଲେ । କହିଲେ ଯେ, ବିଶ୍ୱରୂପର ତପସ୍ୟା ଭାଙ୍ଗିବା କିଛି ସହଜ କଥା ନୁହେଁ ।

ଇନ୍ଦ୍ର ମହାତ୍ମା ବିଶ୍ୱରୂପଙ୍କର ଅନ୍ତ କରିଦେବାପାଇଁ ନିର୍ଣ୍ଣୟ ନେଲେ । ସେ କେତେ ବଡ ପାପ କରିବାକୁ ଯାଉଛନ୍ତି, ସେ ବିଷୟରେ ସାମାନ୍ୟ ଚନ୍ତା ମଧ୍ୟ କରିପାରିଲେ ନାହିଁ । ସେ ଐରାବତ ଉପରେ ବସି ବିଶ୍ୱରୂପଙ୍କ ପାଖକୁ ଗଲେ ଓ ନିଜର ବ୍ରଜାୟୁଧ ପ୍ରୟୋଗ କଲେ ।

ତ୍ୱଷ୍ଟୁ ଯେତେବେଳେ ଜାଣି ପାରିଲେ ଯେ,



ଇନ୍ଦ୍ର ତାଙ୍କର ପୁତ୍ରକୁ ହତ୍ୟା କରିଛି, ସେ କ୍ରୋଧିତ ହୋଇ ଉଠିଲେ । ନିଜର ଅଧର୍ବଣ ମନ୍ତ୍ର ସବୁ ଉଚ୍ଚାରଣ କରି ଅଗ୍ନି ପ୍ରଜ୍ଜ୍ୱଳିତ କଲେ ଓ ସେଥିରୁ ଆଲୋକ ସଦୃଶ ଏକ ପୁତ୍ର ଉତ୍ପନ୍ନ ହେଲା । ତା'କୁ ଦେଖି ତ୍ୱଷ୍ଟୁ ଘୋଷଣା କଲେ, ‘‘ତୁମ୍ଭର ନାମ ହେବ ବୃତ୍ର । ତୁମ ଅଗ୍ରଜଙ୍କୁ ଇନ୍ଦ୍ର ବ୍ରଜାୟୁଧରେ ହତ୍ୟା କରିଛି । ସେହି ଇନ୍ଦ୍ରକୁ ହତ୍ୟା କରିବା ପାଇଁ ତୁମେ ଜନ୍ମ ହୋଇଛ । ଏହି କାମ ସୁଚାରୁ ରୂପେ ପାଳନ କରିବ ।’’

ସେ ବୃତ୍ର ପାଇଁ ବିବିଧ ପ୍ରକାରର ଅସ୍ତ୍ରଶସ୍ତ୍ର ସୃଷ୍ଟି କଲେ ଓ ସେସବୁ ତା'କୁ ଅର୍ପଣ କଲେ । ରଥ ମଧ୍ୟ ପ୍ରଦାନ କଲେ ଓ ଶୁଭବେଳ ଦେଖି ବ୍ରାହ୍ମଣଙ୍କ ଆଶୀର୍ବାଦ ସହିତ ଇନ୍ଦ୍ରଙ୍କୁ ବଧ କରିବା ପାଇଁ ତା'କୁ ପଠାଇଲେ ।

ଯେତେବେଳେ ମୁନି, ଯକ୍ଷ ଓ ଦେବତାମାନେ ଶୁଣିଲେ ଯେ, ବୃତ୍ର ଇନ୍ଦ୍ରଙ୍କୁ ସଂହାର କରିବା ପାଇଁ ଆସୁଛି, ସେମାନେ ଭୟଭୀତ ହୋଇ ପଡିଲେ । ସେମାନଙ୍କୁ ପଳାୟନ କରୁଥିବାର ଦେଖି ଇନ୍ଦ୍ର ତା'ଙ୍କର ସେବକମାନଙ୍କୁ ଆଜ୍ଞା ଦେଲେ, ରୁଦ୍ରଗଣ, ଆଦିତ୍ୟଗଣ, ବସୁଗଣ ଓ ଦିଗ୍‌ପାଳଗଣ ବିମାନରେ ବସି ଯୁଦ୍ଧ କରିବାକୁ ଯିବା ପାଇଁ ।

ଏପରି କରି ଇନ୍ଦ୍ର ବୃହସ୍ପତିଙ୍କୁ ମଧ୍ୟ ନିଜ ହାତୀ ଉପରେ ବସାଇ ଯୁଦ୍ଧ କରିବାକୁ ବାହାରିଲେ । ସେମାନଙ୍କ ପଛେ ପଛେ ହତିଆର ସହିତ ଦେବତାମାନେ ମଧ୍ୟ ବାହାରି ପଡିଲେ । ବୃତ୍ର ମଧ୍ୟ ସାଙ୍ଗରେ ଦାନବ-ସେନା ଆଣି ଥିଲା । ଦୁଇ ସେନାଙ୍କ ମଧ୍ୟରେ ମାନସ ସରୋବରର ଉତ୍ତରରେ ସ୍ଥିତ ପର୍ବତ ଉପରେ ସମ୍ମୁଖ ଯୁଦ୍ଧ ଆରମ୍ଭ ହୋଇଗଲା ।

ଶହେ ବର୍ଷ କାଳ କ୍ରମାଗତ ଯୁଦ୍ଧ ଚାଲିଲା । ଏହି କାରଣରୁ ସାରା ଜଗତର ଲୋକ କଷ୍ଟ ଅନୁଭବ କଲେ । ପ୍ରଥମେ ବରୁଣ ପଳାୟନ କଲେ । ତା'ପରେ ଧୀରେ ଧୀରେ ବାୟୁଗଣ, ଯମ, ଜ୍ୟୋତିହୀନ ଅଗ୍ନି ଜଣ ଜଣ କରି ପଳାୟନ କଲେ । ଶେଷରେ ଇନ୍ଦ୍ରଙ୍କୁ ମଧ୍ୟ ପଳାୟନ କରିବାକୁ ପଡିଲା । ସବୁ ଦେବତାଙ୍କ ଉପରେ ବିଜୟ ହାସଲ କରିବା ପରେ ବୃତ୍ର ତା'ପିତାଙ୍କ ନିକଟକୁ ଆସିଲା ଓ ପ୍ରଣାମ ଜଣାଇ କହିଲା, ‘‘ସମସ୍ତେ ଭୟଭୀତ ହୋଇ ଯୁଦ୍ଧ କ୍ଷେତ୍ରରୁ ପଳାୟନ କଲେ । ସେମାନେ ଭୟାତୁର ଥିବାରୁ, ମୁଁ କାହାରିକୁ ହତ୍ୟା କରିନାହଁ । ଇନ୍ଦ୍ର ଜୀବନ ବିକଳରେ ପଳାଇ ଯାଉଥିବା ବେଳେ ତା' ହାତୀକୁ ଧରି ଆଣିଛି । ଏହାକୁ ଆପଣ ଉପହାର ସ୍ୱରୂପ ଗ୍ରହଣ କରନ୍ତୁ । ଏବେ ମୋତେ କ'ଣ କରିବାକୁ ହେବ, ଆଦେଶ ଦିଅନ୍ତୁ । ଯେ କୌଣସି କଠିନ କାର୍ଯ୍ୟ କରିବାକୁ ମୁଁ ପ୍ରସ୍ତୁତ ଅଛି ।’’

ନିଜ ପୁତ୍ର ଉପରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ତ୍ୱଷ୍ଟୁ କହିଲେ: ‘‘ପୁତ୍ର, ତୁମର ପରାକ୍ରମ

ଅତୁଳନୀୟ । ଏବେ ଗର୍ବରେ ମଥା ଉପରକୁ କରି ମୁଁ ବାହାରକୁ ବାହାରି ପାରିବି । ତୁମେ ବ୍ରହ୍ମାଙ୍କୁ ତପସ୍ୟା କର ଓ ଅମର ହୋଇଯାଅ । ତା'ପରେ ଇନ୍ଦ୍ରର ସଂହାର କର ।''

ବୃତ୍ର ପିତାଙ୍କଠାରୁ ଅନୁମତି ନେଲେ ଓ କ୍ରୋଧ ଜର୍ଜରିତ ହୋଇ ଗନ୍ଧ ମାର୍ଦ୍ଦନ ପର୍ବତ ପାଖକୁ ଗଲେ । ଗଙ୍ଗାରେ ସ୍ନାନ କଲେ ଓ ସବୁ ପ୍ରକାରର ଆହାର ତ୍ୟାଗ କରି ଯୋଗ ପାଳନ କଲେ । ତା'ପରେ ବ୍ରହ୍ମାଙ୍କ ତପସ୍ୟାରେ ମଗ୍ନ ହୋଇଗଲେ । ତା'ର ତପସ୍ୟାରେ ସନ୍ତୁଷ୍ଟ ହୋଇ ବ୍ରହ୍ମା ପ୍ରତ୍ୟକ୍ଷ ହେଲେ ଓ କହିଲେ, ''ଏବେ ତପସ୍ୟା ବନ୍ଦ କର । ତୁମେ କ'ଣ ଚାହୁଁଛ, ପ୍ରକାଶ କର ।''

ବୃତ୍ର ହାତଯୋଡି ବ୍ରହ୍ମାଙ୍କୁ କହିଲା, ''ଭଗବାନ୍, ଇନ୍ଦ୍ରପଦ ପାଇ ମୁଁ ବହୁତ ସନ୍ତୁଷ୍ଟ । ଆଜି ଆପଣଙ୍କର ଦର୍ଶନ -ସୌଭାଗ୍ୟ ମିଳିଥିବାରୁ ମୁଁ ନିଜକୁ ଧନ୍ୟ ମନେ କରୁଛି । ମୁଁ ଯାହା ମାଗୁଛି, ଆପଣ ତାହା ମୋତେ ପ୍ରଦାନ କଲେ, ମୁଁ ଅମର ହୋଇଯିବି । ଲୁହା, କାଠ, କିମ୍ବା କୋମଳ କି, କଠୋର କୌଣସି ପ୍ରକାର ହତିଆରରେ ମୋର ବଧ ହେବ ନାହିଁ । ଯୁଦ୍ଧ ଯେତେ ଅଧିକ ତୀବ୍ର ହେବ, ମୋର ଶକ୍ତି ସେତେ ସେତେ ବଢ଼ି ଚାଲିଥିବ । ମୋତେ ଏହି ବର ପ୍ରଦାନ କରନ୍ତୁ ।''

ବ୍ରହ୍ମା ତା'କୁ ତା'ର ଇଚ୍ଛା ମୁତାବକ ବର ପ୍ରଦାନ କଲେ ଓ ସେଠାରୁ ପ୍ରସ୍ଥାନ କଲେ ।

ବୃତ୍ର ବଡ ଆନନ୍ଦରେ ନିଜ ପିତାଙ୍କ ନିକଟରେ ପହଞ୍ଚିଲା ଓ ବଡ ଆଗ୍ରହରେ ସମସ୍ତ ଘଟଣା ସବିସ୍ତାରେ ଜଣାଇଲା ।

''ପୁତ୍ର, ତୁମର ଶୁଭ ହିଁ ଶୁଭ ହେବ । ତୁମ ଅଗ୍ରଜକୁ ବଧ କରିଥିବା ସେହି ଦୁଷ୍ଟ ପାପୀ ଇନ୍ଦ୍ରକୁ ବଧ କରି ତୁମେ ନିଷ୍କଣ୍ଟକ ହୋଇ ପାରିବ । ନିର୍ଭୟ ଚିତ୍ତରେ ଆଗୁସାର ହୁଅ ।''



ପିତାଙ୍କ ଆଜ୍ଞା ଅନୁସାରେ ଇନ୍ଦ୍ରଙ୍କୁ ବଧ କରିବା ପାଇଁ ବୃତ୍ର ରଥରେ ବସିଲା ଓ ଏକ ବିରାଟ ସେନା ଧରି ଯୁଦ୍ଧ ପାଇଁ ବାହାରି ପଡିଲା । ଇନ୍ଦ୍ର ପୁଣିଥରେ ବୃତ୍ର ସହିତ ଯୁଦ୍ଧ କରିବାକୁ ପ୍ରସ୍ତୁତ ହେଲେ ।

ଇନ୍ଦ୍ର ଓ ବୃତ୍ର ମଧ୍ୟରେ ଘମାଘୋଟ ଲଢ଼ାଇ ଚାଲିଲା । ଇନ୍ଦ୍ର ପରାଜିତ ହୋଇଗଲେ ଓ ଅନାଥ ହୋଇ ଗଲେ । ବୃତ୍ର ଅମରାବତୀ ପହଞ୍ଚିଯାଇ ସବୁ ସଂପଦର ଅଧିକାରୀ ହେଲା ।

ନିଜପୁତ୍ରକୁ ସ୍ୱର୍ଗର ରାଜା ହେବା ଦେଖି ତ୍ୱଷ୍ଟା ଅତ୍ୟନ୍ତ ଆନନ୍ଦିତ ହେଲେ । ଦେବତା ମାନେ ଅନାଥ ହୋଇ ଏଠି ସେଠି ଆତ୍ମଗୋପନ କଲେ । ଦେବନଗରୀ ଏବେ ରାକ୍ଷସନଗରୀ ହୋଇଗଲା ।

ଦେବତାମାନେ ଶିବଙ୍କୁ ଦୁଃଖିତ ଜଣାଇଲେ । ସେମାନେ କହିଲେ: ''ଆମେ ଅପାଣଙ୍କ ଶରଣାଗତ ହେଲୁ । ଆପଣ ଆମକୁ ରକ୍ଷା କରନ୍ତୁ ।''

ଶିବ ସ୍ୱାଭାବିକ ଭାବେ ଦେବତା ମାନଙ୍କୁ



ତା'ଙ୍କରି ସାହାଯ୍ୟ ଭିକ୍ଷା କର ।

ଦେବଗଣ କଳ୍ପବୃକ୍ଷରେ ପରିପୂର୍ଣ୍ଣ ମେରୁ ପର୍ବତ ଉପରକୁ ଗଲେ । ସେମାନେ ସେଠାରେ ମହାଦେବୀଙ୍କୁ ଧ୍ୟାନ କଲେ । ମହାଦେବୀଙ୍କ ଠାରୁ ଆଗରୁ ପାଇଥିବା ସାହାଯ୍ୟ ନିମନ୍ତେ କୃତଜ୍ଞତା ଜଣାଇ ସେମାନେ କହିଲେ: ''ଆପଣ ଆରମ୍ଭରୁ ମହିଷାସୁର, ଶୁମ୍ଭ, ନିଶୁମ୍ଭ ତଥା ଅନ୍ୟାନ୍ୟ ରାକ୍ଷସମାନଙ୍କୁ ବଧ କରିଛନ୍ତି । ମାତଃ, ଏହି ବୃତ୍ର ଆଦ୍ୟରୁ ଆପଣଙ୍କର ଶତ୍ରୁ ହୋଇ ରହିଛି । ନଚେତ୍, ଆମପରି ଆପଣଙ୍କ ଭକ୍ତଜନଙ୍କ ଉପରେ ସେ ଅତ୍ୟାଚାର କରନ୍ତା କାହିଁକି ?''

ତା'ଙ୍କ ସ୍ତୁତିରେ ପ୍ରସନ୍ନ ହୋଇ ଦେବୀ ପ୍ରକଟିତ ହେଲେ । ତିନିନେତ୍ର, ଦିବ୍ୟ ଆୟୁଧରେ ସୁଶୋଭିତ ଚାରି ବାହୁ, ଦିବ୍ୟ ଆଭୂଷଣ ଓ ଉଜ୍ଜ୍ୱଳ ବସ୍ତ୍ର ପରିଧାନ କରି ଦେବୀ ସେମାନଙ୍କୁ ସହାୟତା ପ୍ରଦାନ କରିବା ପାଇଁ ବଚନ ଦେଲେ ଓ ଅନ୍ତର୍ଦ୍ଧାନ ହୋଇଗଲେ । ଦେବତାମାନେ ମଧ୍ୟ ତୃପ୍ତ ହୋଇ ଫେରିଲେ । ତା'ପରେ ସେମାନେ ବୃତ୍ର ଓ ଇନ୍ଦ୍ର ମଧ୍ୟରେ ମୈତ୍ରୀ ସ୍ଥାପନା ପାଇଁ ମୁନିଗଣଙ୍କୁ ବୃତ୍ର ନିକଟକୁ ପଠାଇଲେ ।

ବୃତ୍ର ନିକଟକୁ ମୁନିମାନେ ଆସି କହିଲେ: ''ବୃତ୍ର, ତୁମେ ନିଶ୍ଚିତ ଭାବରେ ଜଣେ ଯୋଗ୍ୟ ବ୍ୟକ୍ତି । ଇନ୍ଦ୍ରଙ୍କୁ ମଧ୍ୟ ମହା ଭାବେ ପରିଗଣନା କରାଯାଏ । ଏପରି ସ୍ଥିତିରେ ଦୁଇଜଣଙ୍କ ମଧ୍ୟରେ ମୈତ୍ରୀପୂର୍ଣ୍ଣ ସମ୍ବନ୍ଧ ପ୍ରତିଷ୍ଠିତ ହେଲେ । ଜଗତ ପାଇଁ ଖୁବ୍ ମଙ୍ଗଳ କାରକ ହେବ । ଇନ୍ଦ୍ର ତୁମ ସହିତ ବନ୍ଧୁତା ପାଇଁ ଲାଳାୟିତ । ତୁମେ ମଧ୍ୟ ବନ୍ଧୁତାର ହାତ ବଢ଼ାଅ । ଆମେ ମୁନିମାନେ ତୁମ ଦୁହିଁଙ୍କ ମଧ୍ୟରେ ମଧ୍ୟସ୍ଥତା କରିବୁ ।''

ବୃତ୍ର ଉତ୍ତର ଦେଲା, ''ଆପଣମାନଙ୍କ ପ୍ରତି ମୋର ଅସୀମ ଶ୍ରଦ୍ଧା ରହିଛି । ଆପଣମାନଙ୍କ

କହିଲେ: ''ମୁଁ ବ୍ରହ୍ମାଙ୍କୁ ସାଙ୍ଗରେ ନେଇ ବିଷ୍ଣୁଙ୍କ ପାଖକୁ ଯିବି । ବୃତ୍ରକୁ ବଧ କରିପାରିବା ଭଳି ଶକ୍ତି ତା'ଙ୍କର ଅଛି ।''

ସମସ୍ତେ ଏକାଠି ବୈକୁଣ୍ଠ ଗଲେ । ବିଷ୍ଣୁ ସେମାନଙ୍କୁ ଦେଖି ପ୍ରଶ୍ନ କଲେ: ''ସମସ୍ତେ ଏକତ୍ରିତ ଭାବେ ଏଠାକୁ ଆସିଛ । କଥା କ'ଣ ?''

ଦେବତାମାନେ ସେମାନଙ୍କର ଦୁଃଖର କାହାଣୀ ବର୍ଣ୍ଣନା କଲେ । ଏହା ଶୁଣି ବିଷ୍ଣୁ ସେମାନଙ୍କୁ ଏପରି କହିଲେ: ''ତୁମ ମାନଙ୍କ ଉପରେ ଯେଉଁ ଅତ୍ୟାଚାର ହୋଇଛି, ତାହା ମୁଁ ଜାଣିଛି । ବୃତ୍ର ଓ ଇନ୍ଦ୍ରଙ୍କ ମଧ୍ୟରେ ମିତ୍ରତା ସ୍ଥାପନ କରି, ବନ୍ଧୁତା ବଢ଼ାଅ । ବ୍ରଜାୟୁଧ ମଧ୍ୟରେ ମୁଁ ଅଦୃଶ୍ୟ ଭାବେ ରହିବି ଓ ତୁମ ମାନଙ୍କର ସହାୟତା କରିବି । ସକଳ ଇଚ୍ଛା ପୂରଣ କରୁଥିବା ଜଗନ୍ମାତାଙ୍କୁ ପ୍ରାର୍ଥନା କର । ସେହି ମାତା ତା'ଙ୍କର ଯୋଗମାୟା ବଳରେ ତୁମମାନଙ୍କୁ ସାହାଯ୍ୟ କରିବେ । ତା'ଙ୍କ ମାୟାର ଅଧୀନ ହୋଇ ବୃତ୍ର, ଇନ୍ଦ୍ରଙ୍କ ଦ୍ୱାରା ବଧ ହେବ । ତୁମେ ମାନେ

ଇଚ୍ଛାକୁ ଅସ୍ୱୀକାର କରନ୍ତି ନାହିଁ । କିନ୍ତୁ ପାପୀ ଇନ୍ଦ୍ରକୁ, ଇନ୍ଦ୍ରକୁ ମୁଁ କିପରି ବିଶ୍ୱାସ କରିବି ?''

ମୁନିଗଣ କହିଲେ: ''ପାପୀ ଅବଶ୍ୟ ତା'ର ପାପର ଫଳ ଭୋଗ କରିବ । ବ୍ରହ୍ମହତ୍ୟା କିମ୍ବା ମଦ୍ୟପାନ ପରି ଅପରାଧର ପ୍ରାୟଶ୍ଚିତ ପାଇଁ ଉପାୟ ଅଛି । କିନ୍ତୁ ମିତ୍ରଦ୍ରୋହ ପାପର କୌଣସି ପ୍ରାୟଶ୍ଚିତ ନାହିଁ । ତେଣୁ ଇନ୍ଦ୍ର ସହିତ ତୁମେ ମିତ୍ରତାର ବନ୍ଧନରେ ଆବଦ୍ଧ ହୁଅ ।''

''ଶୁଖିଲା କିମ୍ବା ଓଦା ବସ୍ତୁ ଦ୍ୱାରା, ପଥର କିମ୍ବା କାଠ, ଦିନ କିମ୍ବା ରାତି କୌଣସି ସମୟରେ ଇନ୍ଦ୍ର କିମ୍ବା ଅନ୍ୟ କେହି ଦେବତା ମୋତେ ମାରିବେ ନାହିଁ । ଏହି ସର୍ତ୍ତରେ ମୁଁ ନିର୍ଭୟ ଚିତ୍ତରେ ବନ୍ଧୁତା ସ୍ଥାପନ କରିପାରେ ।'' ବୃତ୍ର କହିଲା ।

ମୁନିଗଣ ଇନ୍ଦ୍ରଙ୍କୁ ସବୁକଥା କହିଲେ । ଇନ୍ଦ୍ର ସବୁ ସର୍ତ୍ତ ମାନିନେଲେ । ଇନ୍ଦ୍ର ଅଗ୍ନିକୁ ସାକ୍ଷୀରଖି ଯେତେବେଳେ ସତ୍ୟ କଲେ ବୃତ୍ର ଇନ୍ଦ୍ରଙ୍କ ସହିତ ବନ୍ଧୁତା ସ୍ଥାପନ କଲା ।

ଦୁହେଁ ସ୍ନେହପୂର୍ବକ ମିଳାମିଶା କଲେ ଓ ଏକତ୍ର ବିଚରଣ କଲେ । ସମୁଦ୍ର ତଟ ଓ ନନ୍ଦନବନରେ ସେମାନେ ଅଧିକ ସମୟ ବିତାଉଥିଲେ । ଏବେ ବୃତ୍ରକୁ ଇନ୍ଦ୍ର ବିଶ୍ୱାସ କଲେ । କିନ୍ତୁ ବୃତ୍ରକୁ ମାରିବା ପାଇଁ ସୁଯୋଗର ଅପେକ୍ଷାରେ ଥିଲେ ।

ଦିନେ ସନ୍ଧ୍ୟା ସମୟରେ ଇନ୍ଦ୍ର ଓ ବୃତ୍ର କୂଳରେ ବୁଲୁଥିଲେ । ସେହି ସମୟକୁ ଦିନ କିମ୍ବା ରାତ କୁହାଯାଇ ପାରିବ ନାହିଁ । ତା'ଛଡା ବୃତ୍ର ଏକାକୀ ଥିଲା । ଇନ୍ଦ୍ର ମନେ କଲେ ବୃତ୍ରକୁ ବଧ କରିବା ପାଇଁ ଏହା ପ୍ରକୃଷ୍ଟ ସମୟ । ସେ ବିଷ୍ଣୁଙ୍କୁ ଧ୍ୟାନ କଲେ । ବିଷ୍ଣୁ ଆସି ବଜ୍ରାୟୁଧରେ ଅଦୃଶ୍ୟ ଭାବେ ପ୍ରବେଶ କଲେ । ଇନ୍ଦ୍ର ସମୁଦ୍ରର ଫେଣ କୁ ଦେଖିଲେ । ତାହା ଶୁଖିଲା କିମ୍ବା ଓଦା ନଥିଲା । ଇନ୍ଦ୍ର ମନେ ମନେ ଦେବୀଙ୍କୁ ସ୍ମରଣ କଲେ । ଦେବୀ ତା'ଙ୍କର ଶକ୍ତି ସେହି ଫେଣରେ ମିଶାଇଲେ । ଇନ୍ଦ୍ର ତାଙ୍କର ବଜ୍ରାୟୁଧକୁ ସମୁଦ୍ରରେ ଫେଣରେ ଢ଼ାଙ୍କି ଦେଇ ବୃତ୍ର ଉପରକୁ ଖୁବ୍ ଜୋର୍‌ରେ ପିଙ୍ଗିଲେ । ସେହି ଚୋଟରେ ବୃତ୍ର ଧରାଶାୟୀ ହୋଇଗଲେ ଓ ସେହିଠାରି ପଡି ପ୍ରାଣତ୍ୟାଗ କଲା ।

ଶତ୍ରୁଭୟରୁ ମୁକ୍ତ ହୋଇ ଇନ୍ଦ୍ର ଅବରବତୀ ଫେରିଆସିଲେ ମୁନିଗଣ ସ୍ତୋତ୍ରପାଠ ପରି ମହାଦେବୀଙ୍କର ଉତ୍ସବ ପାଳନ କଲେ । ନନ୍ଦନ ବନରେ ଦେବୀଙ୍କର ଏକ ସୁରମ୍ୟ ମନ୍ଦିର ତୋଳାଗଲଣ । ଓ ସେଠାରେ ଦେବୀଙ୍କର ମୂର୍ତ୍ତି ସ୍ଥାପନ କରାଗଲା





# ଏକତା

ସୁକର୍ମ ନାମକ ଜଣେ ମହାତ୍ମା ତା'ଙ୍କ ଶିଷ୍ୟ ସୁହସ୍ତକୁ ସାଙ୍ଗରେ ଧରି ଦେଶ ପର୍ଯ୍ୟଟନରେ ବାହାରି ଥିଲେ । ସୂର୍ଯ୍ୟାସ୍ତ ସମୟକୁ ସେମାନେ ଦୁହେଁ ନରଂଜନପୁର ନାମକ ଏକ ଗ୍ରାମରେ ପହଞ୍ଚିଲେ । ସେହି ରାତ୍ରିରେ ସେମାନେ ବିଶ୍ରାମ ନେବା ଉଦ୍ଦେଶ୍ୟରେ ଏକ ଧର୍ମଶାଳାରେ ରହିଲେ ।

ଗୁରୁ ଶିଷ୍ୟ ଦୁହେଁ ଧର୍ମଶାଳା ଭିତରକୁ ପଶିବା ବେଳକୁ ଜଣେ ବଳିଷ୍ଠ ଲୋକ ବାର ତେର ବର୍ଷର ଜଣେ ବାଳକକୁ ଧରି ଗୋଟିଏ ବେତରେ ଖୁବ୍ ଜୋର୍‌ରେ ପିଟୁଥାଏ ।

ସେମାନେ ଏହି ବିଷୟରେ ଜାଣିବା ପାଇଁ ଇଚ୍ଛା ପ୍ରକାଶ କଲେ । ଘଟଣାଟି ଏହିପରି । ସେହି ବାଳକ ଲୋକଟି ଘରେ କାମ କରୁଥିଲା । ମାତ୍ର ସେଠାରେ କାମ କରିବାକୁ ତା'ର ଆଗ୍ରହ ନ ଥିଲା । ସେଠାକାର ପରିବେଶ ତା'କୁ ନର୍କ ସଦୃଶ ମନେ ହେଉଥିଲା । ତେଣୁ ସେ କାହାକୁ କିଛି ନ କହି ସେଠାରୁ ପଳାଇ ଆସିଲା । ବାଳକର ନିଜର କେହି ଆତ୍ମୀୟ ନ ଥିବାରୁ ସେ ଧର୍ମଶାଳାରେ ଆଶ୍ରୟ ନେଲା । ସେହି ବଳିଷ୍ଠ ଲୋକଟି ବାଳକ ବିରୁଦ୍ଧରେ ଏକ ମୂଲ୍ୟବାନ ହାର ଚୋରୀ କରିଥିବାର ଅଭିଯୋଗ ଆଣି, ଧର୍ମଶାଳାରେ ଏପରି ପିଟୁଥିଲା । ବାଳକଟି ଚିତ୍କାର କରି କହୁଥାଏ ଯେ ସେ ଏପରି କାମ କରିନାହିଁ ।

ବାଳକକୁ ଏପରି ନିର୍ଦ୍ଦୟ ଭାବେ ପ୍ରହାରରୁ ରକ୍ଷା କରିବା ପାଇଁ କେହି ଆଗଭର ହେଉ ନ ଥାନ୍ତି ।

ଏପରି ଅତ୍ୟାଚାର ବାଳକ ସହ୍ୟ କରି ପାରିଲା ନାହିଁ । ଶେଷରେ କୌଣସି ଉପାୟ ନ ପାଇ ଗଙ୍ଗା ନାମକ ଜଣେ ଲୋକର ପାଦ ଧରି ପକାଇ, 'ରକ୍ଷାକର' 'ରକ୍ଷାକର' କହି ବିକଳ ହେଲା । ଗଙ୍ଗା ମଧ୍ୟ ଜଣେ ହୃଷ୍ଟପୁଷ୍ଟ ଓ ବେଶ୍ ଲମ୍ବା-ଚୌଡା ମଣିଷ ।

କିନ୍ତୁ ଗଙ୍ଗା ସେହି ବାଳକର ଆର୍ତ୍ତ ଚିତ୍କାର ପ୍ରତି କର୍ଣ୍ଣପାତ କରିଲା ନାହିଁ । ଅତ୍ୟନ୍ତ ଦୟାଶୂନ୍ୟ ଭାବେ ସେ ତା'କୁ ଧକ୍କା ଦେଇ କହିଲା: ''ମୋର କ'ଣ ଦରକାର ପଡିଛି ଯେ, ମୁଁ ତତେ ରକ୍ଷା କରିବାକୁ ଯିବି । ଯଦି ଚାହୁଁଛୁ ଅଦାଲତରେ ନାଲିସ୍

କର ।''

ପୁରନ୍ଦର ନାମକ ଜଣେ ଦୁର୍ବଳ, ପତଳା ଲୋକ ଏସବୁ ଦେଖୁଥିଲା । ତା' ମନରେ କ୍ରୋଧ ସୃଷ୍ଟି ହେଲା ଓ ସେ ବଳିଷ୍ଠ ଲୋକକୁ କହିଲା, ''ଏହା ଅତ୍ୟନ୍ତ ଅନ୍ୟାୟ ହେଉଛି, ଯଦି ସତରେ ତୁମ ହାର ଚୋରି ହୋଇ ଯାଇଛି, ତେବେ ଯାଇ ଅଦାଲତରେ ଅଭିଯୋଗ କର । ଏହି ବାଳକକୁ ପଶୁ ପରି ବାଡେଇବା ଆଦୌ ଉଚିତ କାମ ନୁହେଁ । ତା'କୁ ଛାଡି ଦିଅ ।'' ବଳିଷ୍ଠ ବ୍ୟକ୍ତି ପୁରନ୍ଦର ଆଡକୁ ବୁଲିକରି ଚାହିଁଲା ଓ କହିଲା, ''ଆରେ ହଡା ! କ'ଣ ତୋ'ର ବଞ୍ଚିବାକୁ ଇଚ୍ଛା ନାହିଁ ?'' ଏପରି କହି ସେ ପୁରନ୍ଦରକୁ ଏକ ଧକ୍କା ପକାଇଲା ଓ ସେ ଯାଇ ସମେବେତ ଲୋକଙ୍କ ଉପରେ ପଡିଲା ।

ଶେଷରେ ଗୁରୁ-ଶିଷ୍ୟଙ୍କ ଅନୁରୋଧ କ୍ରମେ ଧର୍ମଶାଳାର ମାଲିକ ଏହି ଘଟଣାରେ ହସ୍ତକ୍ଷେପ କଲେ ଓ ସିପାହୀଙ୍କୁ ଡକାଇଲେ । ସେହି ବଳିଷ୍ଠ ଲୋକ ଓ ବାଳକକୁ ସିପାହୀଙ୍କ ଜିମା ଦେଲେ ।

ରାସ୍ତାରେ ଶିଷ୍ୟ ସୁରସ୍ତ ଗୁରୁ ସୁକର୍ମଙ୍କୁ ପଚାରିଲେ, ''ଗୁରୁଦେବ, କାଲି ରାତିରେ ଧର୍ମଶାଳାରେ ଯେଉଁ ଘଟଣା ଘଟିଲା, ତାହା ମୋତେ ଖୁବ୍ ବାଧିଲା । ଗୋଟିଏ ଦୃଢ଼କାୟ ମଣିଷ, ଜଣେ ଛୋଟ ବାଳକକୁ ପିଟି ଚାଲିଥାଏ, ଓ ସେଠାରେ ଉପସ୍ଥିତ ଅନ୍ୟ ଲୋକମାନେ ନିରବରେ ତାହା ଦେଖୁଥାନ୍ତି ! ତା'କୁ ରକ୍ଷା କରିବାକୁ କେହି ଆଗକୁ ଆସୁ ନ ଥାନ୍ତି । ବାସ୍ତବିକ ସେମାନେ ସ୍ୱଭାବରେ କେତେ ନିକୃଷ୍ଟ !''

ଗୁରୁଦେବ କହିଲେ: ''ଏପରି ଦୃଶ୍ୟ ତୁମେ ଏବେ ନୂତନ ଭାବେ ଦେଖୁଛ । ତେଣୁ ତୁମେ ଏତେ ଚିନ୍ତିତ ହୋଇ ପଡିଛ । ଯେତେବେଳେ କୌଣସି ଲୋକର ଜୀବନରେ କୌଣସି ଘଟଣା ଘଟେ, ଓ ସେ ତାହା ଦ୍ୱାରା କେତେ ଓ କିପରି ଭାବେ ପ୍ରଭାବିତହୁଏ, ସେଥିରୁ ତା'ର ବ୍ୟକ୍ତିତ୍ୱ ସମ୍ବନ୍ଧରେ ଅନୁମାନ କରା ଯାଇପାରେ । ପ୍ରତ୍ୟେକ ମନୁଷ୍ୟ ମନରେ ଭୟ ରହିଥାଏ ଯେ, କାଳେ



ମୋ ଉପରେ ଏପରି ବିପଦ ଆସି ପଡ଼ିବ । ଏହାର ମୂଳ କାରଣ ହେଉଛି ଏକତାର ଅଭାବ । ଗଙ୍ଗାଠାରେ ସେହି ବଳିଷ୍ଠ ବ୍ୟକ୍ତିକୁ ସମ୍ମୁଖୀନ ହେବା ପରି ଶକ୍ତି ଥିଲା । ସେ ଚାହିଁଥିଲେ ବାଳକକୁ ରକ୍ଷା କରି ପାରିଥାଆନ୍ତା ଓ ସେହି ଲୋକର ଅତ୍ୟାଚାରର ପ୍ରତିବାଦ କରି ପାରି ଥାଆନ୍ତା । ମାତ୍ର ସେ ଏପରି କଲା ନାହିଁ । କାରଣ ଏହି ଘଟଣା ତା' ଉପରେ କିଛି ପ୍ରଭାବ ପକାଇଲା ନାହିଁ, ତା' ମନରେ ସ୍ପନ୍ଦନ କିମ୍ବା ଆଲୋଡ଼ନ ସୃଷ୍ଟି କଲା ନାହିଁ । ମାନବିକତା ଅଭାବରୁ ଏପରି ଘଟିଲା । ପୁରନ୍ଦରର ମାନବିକତା ରହିଛି, ବାଳକକୁ ରକ୍ଷା କରିବା ପାଇଁ ଆକୁଳତା ରହିଛି, କିନ୍ତୁ ଶରୀରରେ ଶକ୍ତି ନାହିଁ । ସେଠାରେ ଯେତେ ଲୋକ ଥିଲେ, ସମସ୍ତେ ଯଦି ଏକତ୍ରିତ ହୋଇ, ଏକସ୍ୱରରେ ପ୍ରତିବାଦ କରିଥାଆନ୍ତେ, ତେବେ ଆପଣା ଛାଏଁ ଶକ୍ତି ସୃଷ୍ଟି ହୋଇଥାଆନ୍ତା । କିନ୍ତୁ ଦୁର୍ଭାଗ୍ୟର କଥା, ସେମାନଙ୍କ ମଧ୍ୟରେ ଏକତା ନ ଥିଲା ।''

''ଗୁରୁଦେବ, ଏପରି ମନୋଭାବକୁ ପରିବର୍ତ୍ତନ କରିବା ପାଇଁ କ'ଣ କିଛି ଉପାୟ ନାହିଁ ?'' ଶିଷ୍ୟ ଜିଜ୍ଞାସା ପ୍ରକାଶ କଲେ । ଗୁରୁଦେବ ସାମାନ୍ୟ ହସି କହିଲେ: ''କାହିଁକି ନାହିଁ ? ଏହାର ଉପାୟ ଅଛି, ମୋ କଥା ଧ୍ୟାନର ସହିତ ଶୁଣ ।''

ବହୁଦିନ ତଳେ ଦଶଜଣ ଲୋକ କାଶୀଯାତ୍ରାରେ ବାହାରି ଥିଲେ । ରାସ୍ତାରେ ତିନିଜଣ ଚୋର ସେମାନଙ୍କୁ ଆକ୍ରମଣ କଲେ । ଛୁରୀ ଦେଖାଇ ଡରାଇଲେ, ଧମକାଇଲେ । ସେମାନଙ୍କୁ ତା'ଙ୍କ ସର୍ଦ୍ଦାର ପାଖକୁ ଧରି ନେବାକୁ ବାହାରିଲେ । ଯାତ୍ରୀମାନଙ୍କ ମଧ୍ୟରୁ ଜଣେ ଚତୁର ଲୋକ ପରିସ୍ଥିତି ଅନୁମାନ କରିନେଲା ଓ ବାଟରେ ମନ ଫୁଲାଣିଆ ଗୀତ ଗାଇବାକୁ ଆରମ୍ଭ କଲା । ଚୋରମାନେ ଭାବିଲେ, ଗୀତ ଗାଉଛି ତ, ସେ ତା'ର ଗାଉ ଥାଉ । ଆମର ସେଥିରେ କ'ଣ ଅଛି ! ସେହି ଗୀତରେ ସେହି ବୁଦ୍ଧିମାନ ଲୋକ ସୂଚନା ଦେଉଥାଏ ଯେ ତିନିର ତିନିଗୁଣ ହେଲେ ନଅ ହୁଏ । ଅନ୍ୟ ଯାତ୍ରୀମାନେ ତା'ର ଗୀତର ଭିତର ଅର୍ଥ ବୁଝି ପାରିଲେ । ତା'ପରେ ଆଉ କ'ଣ ହେବ ? ତିନିଜଣ ଏକାଠି ହୋଇ ଜଣେ ଜଣେ ଡକାୟତକୁ ଜୋରରେ ଜାବୁଡ଼ି ଧରିଲେ । ଦଶମ ଯାତ୍ରୀ ଜଣକ ସେମାନଙ୍କ ହାତରୁ ଛୁରୀ କାଢ଼ିନେଲା ଓ ଜଙ୍ଗଲୀ ଲତାରେ ଚୋରଙ୍କ ହାତ ବାନ୍ଧିଦେଲା । ଏହିପରି ଉତ୍ତମ ମନୁଷ୍ୟ ଭିତରେ ଥିବା ସୁପ୍ତ ଅବସ୍ଥାକୁ ଜାଗ୍ରତ କରାଇବାକୁ ହେବ ଓ ସେମାନଙ୍କର ପଥପ୍ରଦର୍ଶକ ହେବାକୁ ପଡ଼ିବ ।''

ସୁହସ୍ତର ସନ୍ଦେହ ଦୂର ହୋଇଗଲା ।






# କାମଚୋର କମଳ

ଗୋଟିଏ ଗ୍ରାମରେ କମଳ ଓ ସୁନ୍ଦରୀ ନାମକ ଦମ୍ପତି ବାସ କରୁଥିଲେ । ସେମାନଙ୍କର ଗୋଟିଏ ଛୋଟ ଖପରଲି ଘର ଥିଲା ଓ ଅଳ୍ପ କିଛି ଜମିବାଡି ଥିଲା । ସେତିକି ସମ୍ବଳକୁ ନେଇ ସେମାନେ ଯଥା ତଥା ଚଳି ଯାଉଥିଲେ । କମଳ ଥିଲା ଏକ ନମ୍ବର ଅଳସୁଆ । ସେ ଘରର କୌଣସି କାମଦାମ କରୁ ନ ଥିଲା । କୌଣସି ପାରିବାରିକ ଜଞ୍ଜାଳ ସହିତ ତା'ର କୌଣସି ସମ୍ପର୍କ ନଥିଲା । ମାତ୍ର ସୁନ୍ଦରୀ ଖୁବ୍ ହୁସିଆର ଥିଲା । ନିଜ ପରିବାରକୁ ସେ କୌଣସି ପ୍ରକାରେ ଚଳାଇ ନେଉଥିଲା ।

ଦିନେ କମଳ ପତ୍ନୀଙ୍କୁ କହିଲା, ''ଆଗକୁ ପର୍ବ ଆସୁଛି । ଆଜି ତିନି ଚାରିଜଣ ମୁଲିଆ ଡାକି କାନ୍ଥରେ ଚୁନ ଲଗାଇଦେବା ।''

ଏହା ଶୁଣି ସୁନ୍ଦରୀ ବିରକ୍ତ ହୋଇ ଉଠି କହିଲା, ''ଆମେ ଦୁଇଜଣ, ତାଗଡ଼ା, ତାଗଡ଼ା ଲୋକ ଘରେ ଅଛନ୍ତି । ଦୁଇଜଣ ଏକାଠି ମିଶି ଗଲେ, ଏହି କାମ ସହଜରେ ହୋଇ ପାରିବ । ଯାଅ, ଆମ ପଡୋଶୀ ଗୌରୀଅପାଙ୍କ ଘରୁ ନିଶୁଣୀ ନେଇ ଆସିବ । ଏ ଭିତରେ ମୁଁ ଚୁନରେ ପାଣି ମିଶାଉଛି ।

ଏବେ କମଳ ମୁଣ୍ଡରେ ଚିନ୍ତା ପଶିଲା । ଏବେ ତା'କୁ ସବୁ କରିବାକୁ ପଡିବ । ଏପରି ନିଜକୁ ନିଜେ ଗାଳି ଦେଇ କମଳ ବାହାରିଗଲା । କିନ୍ତୁ ସେ ସିଧା ଯାଇ ନିଜ ଭଉଣୀ କମଳା ଘରେ ପହଞ୍ଚିଲା ।

ଗ୍ରାମର ଶେଷ ମୁଣ୍ଡରେ କମଳାର ଶାଶୁଘର । କମଳାର ଶ୍ୱଶୁର ଘର ଖୁବ୍ ସଂପନ୍ନ ଲୋକ । କମଳାର ରଙ୍ଗ ଇଷତ୍ ଶ୍ୟାମଳ । ସେଇ କଥାକୁ ନେଇ ଶାଶୁ କେତେବେଳେ କେମିତି ଖୁଣ୍ଟା ଦିଅନ୍ତି । ଶାଶୁ ବୋହୁ ମଧ୍ୟରେ କଳିତକରାଳ ମଧ୍ୟ ଲାଗିଯାଏ । ଏପରି ପରିସ୍ଥିତିରେ କମଳା ନିଜ ଭାଇ ଘରକୁ ଚାଲିଆସେ । ତା'ପରେ ତା'ର ପତି ଯାଇ ତା'କୁ ବୁଝାଇ ଶୁଝାଇ ଘରକୁ ନେଇ ଆସନ୍ତି । ଏପରି ଘଟଣା ବାରମ୍ବାର ଘଟେ ।

କମଳ କମଳାର ଭାଇ ଘରକୁ ଆସି କହିଲା, ''କମଳା, ତୋ'ର ଭାଉଜ ଚାହୁଁଛି, ତୁ ପର୍ବର ତିନି ଚାରିଦିନ ଆଗରୁ ଆମ ଘରକୁ ଚାଲିଆସ । ସେଥିପାଇଁ ମୁଁ ତୋତେ ଡାକିବା ପାଇଁ ଆସିଛି । ଆଉ କରନା । ଶାଶୁଙ୍କ ଠାରୁ ଅନୁମତି ଆଣି ଶୀଘ୍ର

ନିର୍ମଳା ଦେବୀ



ବାହାରି ପଡ ।''

କମଳା ଏହା କେବେ ଆଶା କରୁ ନଥିଲା । କାରଣ ସେ ତା'ର ଭାଉଜଙ୍କ ସ୍ୱଭାବ ବିଷୟରେ ଭଲଭାବେ ଜାଣିଥିଲା । କିନ୍ତୁ ଭାଇ ଯେତେବେଳେ ନିଜେ ଆସି ଏହା କହିଲେ, ସେ ଖୁବ୍ ଖୁସି ହୋଇ ଗଲା । ଶାଶୁଙ୍କୁ ଏହା ଜଣାଇ, ଭାଇ ସହିତ ବାହାରି ପଡିଲା ।

କିଛି ଦୂର ଯିବାପରେ କମଳ କମଳାକୁ କହିଲା: ''ତୁ ଏଠାରୁ ସିଧା ଘରକୁ ଚାଲିଯିବୁ । ବଜାରରୁ କିଛି ଜିନିଷପତ୍ର କିଣିବାର ଅଛି । ସେ କାମ ତୁଟେଇ ମୁଁ ଖୁବ ଶୀଘ୍ର ଘରେ ଯାଇ ପହଞ୍ଚିବି ।''

କମଳା 'ଠିକ ଅଛି' କହି ସମ୍ମତି ଜଣାଇଲ ଓ ଏକା ଏକା ଭାଇଙ୍କ ଘରକୁ ଆସିଲା । ଏହା କମଳର ଏକ ଚାଲ ଥିଲା । ସେ ଭାବିଲା ଯେ, ନିଜ ନଣନ୍ଦ କମଳା ସମ୍ମୁଖରେ ନିଶୁଣୀରେ ଚଢ଼ି ଚୁନ ଲଗାଇବାକୁ ସୁନ୍ଦରୀ କୁଣ୍ଠିତ ହେବ ଓ ତା'କୁ ଲଜ୍ୟା ଲାଗିବ । ତେଣୁ ସେ ମୁଲିଆ ଡକାଇ ସେ କାମ କରାଇବ । ଯାହା ଫଳରେ ତା'କୁ ମଧ୍ୟ ସେ କାମରୁ ନିଷ୍କୃତି ମିଳିବ ।

ସୁନ୍ଦରୀ ଜାଣିଗଲା ଯେ, ତା'ର ପତି ପଡୋଶୀ ଗୌରୀଙ୍କ ଘରୁ ନିଶୁଣୀ ଆଣିବାକୁ ଯାଇ ନାହାନ୍ତି । ତେଣୁ ସେ ନିଜେ ଯାଇ ତା'ଙ୍କ ଘରୁ ନିଶୁଣୀ ନେଇ ଆସିଲା । ଏବେ ସେ ନିଜେ କାନ୍ଥରେ ଚୁନ ଲିପିବା କାମ ଆରମ୍ଭ କରିଥାଏ ।

ଏତିକିବେଳେ କମଳା ଆସି ସେଠାରେ ପହଞ୍ଚିଗଲା ଓ କହିଲା: ଭାଉଜ, ଭାଇ କହିଲେ ଯେ, ତୁମେ ଚାହୁଁଛ ଯେ ପର୍ବର ତିନି ଚାରିଦିନ ଆଗରୁ ମୁଁ ଏଠିକୁ ଆସି ତୁମମାନଙ୍କ ସହିତ ରହେ । ସେ ମୋତେ ଡାକି ଆଣିଲେ ଓ ନିଜେ ବଜାରରୁ କିଛି ଜିନିଷ କିଣିବାକୁ ଯାଇଛନ୍ତି ।''

କମଳାର କଥା ଶୁଣି ସୁନ୍ଦରୀ ନିଜ ପତି କମଳର ଚାଲ୍ ଠିକ୍ ବୁଝିପାରିଲା । ମନେ ମନେ ଖୁବ୍ ବିରକ୍ତ ହେଲେ ମଧ୍ୟ ଉପରେ ହସ ଫୁଟାଇ କହିଲା, ''ଭଲ ହେଲା, ଠିକ୍ ବେଳରେ ତୁମେ ଆସି ପହଞ୍ଚିଯାଇଛ, ଘର ସହିତ ତୁମ ଉପରେ ମଧ୍ୟ ଚୁନ ଧଉଳି କରି ତୁମକୁ ଶାଶୁ ଘରକୁ ପଠାଇବି । ତୁମ ଶାଶୁ ପରା ତୁମକୁ କାଳୀକୋତରୀ କହି ସବୁବେଳେ ଝଗଡା ଲଗାଉଛନ୍ତି ! ଏଥରକ ତା'ଙ୍କ ମୁହଁ ବନ୍ଦ ହୋଇଯିବ ।''

ଭାଉଜର ଏପରି କଥା ଶୁଣି କମଳା ମନଦୁଃଖ ହୋଇ କହିଲା: ''ତୁମେ ଏପରି କ'ଣ କହୁଛ ? ଭାଇଙ୍କ କଥାରେ ମୁଁ ଏଠିକି ଆସି ବଡ ଭୁଲ୍ କଲି ।'' ଏପରି କହି ସେ ତତ୍‌କ୍ଷଣାତ୍ ସେଠାରୁ ନିଜ ଘରକୁ ବାହାରିଗଲା ।

ସୁନ୍ଦରୀ ତା'ର ଏପରି ଆଚରଣରେ ଆଦୌ ପ୍ରଭାବିତ ହେଲାନାହିଁ । ସେ ତା'ର ଚୁନ ଧଉଳା କାମରେ ଲାଗିଲା ।

କମଳ ଦୂରରୁ ଦେଖିଲା ଯେ କମଳା ବିରକ୍ତ ହୋଇ, ନିଜକୁ ନିଜେ କ'ଣ କହି ତା'ର ଶ୍ୱଶୁର ଘର ଆଡେ ଜୋର୍‌ରେ ମୁହାଁଉଛି । ସେ ଘରକୁ ଆସି ସୁନ୍ଦରୀକୁ ପଚାରିଲା, ''କମଳା ମନଦୁଃଖ କରିଛି । କ'ଣ ତୁମେ ତା'କୁ କିଛି କହିଲ କି ?''

ବିଶେଷ ଗୁରୁତ୍ୱ ନଦେଇ ସୁନ୍ଦରୀ କହିଲା: ''ଭାଉଜ ଓ ନଣନ୍ଦ ଭିତରେ ବହୁତ ଥଟ୍ଟା, ପରିହାସ ହୁଏ । ତା'ଙ୍କ ଦେହରେ କୌଣସି କଥା ଚଳିବ ନାହିଁ । ରୁଷି କରି ଶ୍ୱଶୁର ଘରୁ ବାପାଘର ଓ ବାପାଘରୁ ଶ୍ୱଶୁର ଘରକୁ ଯିବା ତା'ଙ୍କ ପାଇଁ କିଛି ନୂଆ କଥା ନୁହେଁ । ଏହା ତାଙ୍କର ଅଭ୍ୟାସରେ ପଡି ଗଲାଣି । ପରେ ତା'ଙ୍କ ପାଖକୁ ଚାଲିଯିବ ଓ ବୁଝାଇ, ସୁଝାଇ ରାଗ ଥଣ୍ଡା କରିଦେବ । ମାତ୍ର ଏବେ ନିଶୁଣୀରେ ଚଢ଼ ଓ ଚୁନ ଲଗାଇବା କାମରେ ଲାଗିଯାଅ ।'' ସୁନ୍ଦରୀ ଖୁବ୍ କଡାସ୍ୱରରେ ଏତକ କହିଲା ।

କମଳର ବୁଝିବାକୁ ଆଉ ଡେରି ନଥିଲା ଯେ, ତା'ର ଚାଲ୍ କୌଣସି କାମରେ ଲାଗିଲା ନାହିଁ । ଏବେ ବିଚରା ଅଳସୁଆ କରେ କ'ଣ ? ଚୁନ ଡବା ଧରି ନିଶୁଣୀ ଉପରକୁ ଉଠିବା ଛଡା ଅନ୍ୟ ଗତି ନ ଥିଲା ।




ଜହ୍ନମାମୁ ପ୍ରସ୍ତୁତି
ଅଜେୟ ଗରୁଡ
ଚିତ୍ର: ଫଣି
ନିଜର ପୂର୍ବ ପୁରୁଷଙ୍କ ପ୍ରଥା ଅନୁଶାରେ ଆଦିତ୍ୟ ଗରୁଡଙ୍କ ମୂର୍ତ୍ତିକୁ ପୂଜା କରୁଥିଲା । ହଠାତ୍ ଏକ ଉଜ୍ଜ୍ୱଳ ଆଲୋକ ରେଖାରେ ଘର ପରିପୂର୍ଣ୍ଣ ହୋଇଗଲା । ଏହା ଫଳରେ ତାର ଏକ ଅଦ୍‌ଭୁତ ଶାରିରୀକ ପରିବର୍ତ୍ତନ ଘଟିଲା । ସେ ଉକ୍ତ ଶକ୍ତି ଦ୍ୱାରା ରାଜାଙ୍କୁ ଅପହରଣରୁ ରକ୍ଷା କଲା । ତାଙ୍କୁ ଏକ ସୁରକ୍ଷିତସ୍ଥାନରେ ରଖିଲା । ସେନାପତି ନରେନ୍ଦ୍ରଦେବଙ୍କ ପୁତ୍ର ରବିନ୍ଦ୍ରଦେବ ରାଜା ଓ ମନ୍ତ୍ରୀର ଅନ୍ତର୍ଦ୍ଧାନପରେ ଖୁସୀରେ ସରକାର ଗଠନ କଲା ।


ନରେନ୍ଦ୍ରଦେବ ଭିଡଭିତରେ ଆଦିତ୍ୟକୁ ଚିହ୍ନି ପାରିଲା ।
ସେ ଭାବୁଥିଲା କି ତାକୁ କେହି ଚିହ୍ନି ପାରିବେ ନାହିଁ ।
କିଏ ମୋର ପିତା ଆଦିତ୍ୟ ?
ଆଉ କିଏ ? ତାକୁ ଚାଲ ସ୍ୱାଗତ କରିବା


ସ୍ୱାଗତଂ ! ଆମେ ଡରି ଯାଇଥିଲୁ ଆପଣ କୌଣସି ଅସୁବିଧାରେ ପଡିଗଲେ । ଏପରି ବେଶ କାହିଁକି ?
ହୁଏତ ଅସୁବିଧା ହୋଇଥାନ୍ତା । କିନ୍ତୁ ମୋର ବେଶପାଇଁ ରକ୍ଷା ମିଳିଗଲା ।


ଆମର ପ୍ରିୟ ବନ୍ଧୁଙ୍କର ଜୟ ହେଉ !
ଆଦିତ୍ୟଙ୍କର ଜୟହେଉ


ରବିନ୍ଦ୍ରଦେବ ଆଦୌ ଖୁସୀ ଜଣାପଡୁନାହାଁନ୍ତି ।
ଆଦିତ୍ୟ କୁଆଡେ ଅର୍ନ୍ତଧାନ ହୋଇ ଗଲେ ? ଆପଣ ପ୍ରଧାନମନ୍ତ୍ରୀ ଭାବେ ପ୍ରଜାଙ୍କୁ ଏହା କହିବାକୁ ପଡିବ ।

କୌଣସି ଉତ୍ତର ନଦେଇ ଆଦିତ୍ୟ ଭିଡ଼ ଆଡକୁ ଗଲା ।

ରାଜାଙ୍କୁ କିଏ ଅପହରଣ କରି ନେଇଛି । ମନେହୁଏ ତାଙ୍କର ଜୀବନ ସଂକଟପନ୍ନ ।

ମୋର କଥା ଶୁଣ । ଆମର ରାଜା ସୁରକ୍ଷିତ ଅଛନ୍ତି । ଏକ ବିପଦକୁ ଟପିଯିବା ସକାଶେ ତାଙ୍କୁ ପ୍ରାସାଦ ଛାଡିବାକୁ ପଡିଲା । ସେ ଅତିଶିଘ୍ର ଫେରିଆସିବେ । ଆଉ ଅଧିକ କିଛି ଜାଣେନା । ଧର୍ଯ୍ୟ ରଖ ।

ତୁମେ ମିଛୁଆ ତୁମେ ଗରୁଡ ସହ ମିଶିରାଜାଙ୍କର ଅପହରଣ କରିଛ । ତୁମେ ବୋଧେ ତାଙ୍କୁ ହତ୍ୟାକରିଛ ।

କେତେକ ପ୍ରହରୀ ତା ଆଡକୁ ଆସୁଛନ୍ତି ।

ପ୍ରହରୀଗଣ ଏହାଙ୍କୁ ବନ୍ଦୀକର ।

ନରେନ୍ଦ୍ରଦେବ ମଧ୍ୟସ୍ଥତା କରୁଥିବାର ଦେଖି ରବିନ୍ଦ୍ରଦେବ ଆଶ୍ଚର୍ଯ୍ୟ ହେଲେ ।

ଆଦିତ୍ୟ, ତୁମେ ରାଜାଙ୍କ ବାସ ଭବନକୁ ଫେରିଯାଅ । ମୁଁ ରାଜାଙ୍କ ପାଇଁ ଚିନ୍ତିତ ।

ଧନ୍ୟବାଦ, ରାଜା ସୁରକ୍ଷିତ ଅଛନ୍ତି । ସେ ଅତି ଶିଘ୍ର ମହଲକୁ ଫେରି ଆସିବେ ।

ଏହା ଏମାନଙ୍କର ଷଡଯନ୍ତ୍ର ! ନତୁବା ମତେ ଏତେ ଶିଘ୍ର ସେମାନେ ଛାଡିଦେଲେ କାହିଁକି ?

ଘଟନାଚକ୍ର ବଦଳିବା ସହିତ ଲୋକେ ହଇରାଣ ହେଲେ ।

ସେମାନେ କଣ ପ୍ରଧାନମନ୍ତ୍ରୀଙ୍କୁ ବନ୍ଦୀ କରିପାରିବେ ?

ବିଶ୍ୱାସ କର ବନ୍ଧୁ । ଏହି ପିତା-ପୁତ୍ର କିଛି ବି କରିପାରନ୍ତି !

ସେନା ବାହିନୀ ଭିଡକୁ ପଛକୁ ଠେଲିଦେଲେ ।

ଆମର ପ୍ରଧାନମନ୍ତ୍ରୀଙ୍କର କିଛି ବିପଦ ନାହିଁ

ମହଲକୁ ଫେରି କମାଣ୍ଡର ନିଜର ବିଶ୍ୱାସୀ ଅଧିକାରୀଙ୍କୁ ଡକାଇଲା ।

ଦେଖ, ଯେପରି ପ୍ରଧାନମନ୍ତ୍ରୀ ବାହାରକୁ ଯିବେ ନାହିଁ । ତାଙ୍କୁ ଯିଏ ଭେଟିବାକୁ ଆସିବେ ତାଙ୍କ ଉପରେ ନଜର ରଖିବ ।

ହଜୁର ! ଆମେ ତାଙ୍କୁ ଘରୁ ପଦାକୁ ଯିବାକୁ ଦେବୁ ନାହିଁ ।

ଆଦିତ୍ୟ ନିଜ ଘରକୁ ଅସ୍ତ ବ୍ୟସ୍ତ ହୋଇ ପଡିଥିବା ଦେଖିଲା ।


ମହଲ ମଧରେ ନରେନ୍ଦ୍ରଦେବ ଓ ରବିନ୍ଦ୍ରଦେବ ଧ୍ୟାନ ପୂର୍ବକ ଦେବବାଣୀ ଶୁଣିଲେ ।
ହଁ, ମୁଁ ରାଜାଙ୍କୁ ଦେଖିପାରୁଛି । ସେ ବେଶ୍ ପ୍ରସନ୍ନ ଦେଖାଯାଉଛନ୍ତି । ତାଙ୍କ ସହ ଦୁଇଜଣ ବ୍ୟକ୍ତି ଅଛନ୍ତି ।


ଗୋଟିଏ ପୁରୁଷ ଓ ଗୋଟିଏ ନାରୀ ! ଏବଂ ଏଠାରେ ସବୁ ପ୍ରକାର ଜଙ୍ଗଲି ପଶୁ ମାନଙ୍କ ଦ୍ୱାରା ପରିପୂର୍ଣ୍ଣ । କଣ ଏଠାରେ ଜଳପ୍ରପାତ ଅଛି ? କିଛି ସ୍ପଷ୍ଟ ଦେଖାଯାଉ ନାହିଁ ।


ବାପା-ପୁଅ ବି ବ୍ୟସ୍ତ ହେଉଛନ୍ତି !
ଗରୁଡ
ହେ ପ୍ରଭୁ, କି ଆଶ୍ଚର୍ଯ୍ୟ ! ଆମେ ତାର ପାଖକୁ ଯିବୁ, ଦେଖିବୁ ?
ମୋର ମନ ଦୁଃଖ, କିନ୍ତୁ ଏହା କ'ଣ ? ଏକ ଗରୁଡ ପକ୍ଷୀ ? ଆକାଶ ସାରା ଘୁରିବୁଲୁଥିବା ଗରୁଡପକ୍ଷୀ !
କ୍ରମଶଃ



ଶୀର୍ଷକ ସନ୍ଧାନ କରନ୍ତୁ

# ଫଟୋ ପରିଚୟ ପ୍ରତିଯୋଗିତା






ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇଚାରି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ।

ପରିଚୟୋକ୍ତି ସହ ନିଜ ଠିକଣା ପୋଷ୍ଟକାର୍ଡ଼ରେ ଇଂରାଜୀରେ ଲେଖି ନିମ୍ନ ଠିକଣାରେ ପଠାନ୍ତୁ ।

**ଚିତ୍ର ପରିଚୟ ପ୍ରତିଯୋଗିତା, ଚାନ୍ଦାମାମା, ପ୍ଲଟ ନଂ-୮୨**
**ଡିଫେନ୍ସ ଅଫିସର୍ସ କଲୋନୀ, ଇକାଟୁଥାଙ୍ଗଲ, ଚେନ୍ନାଇ- ୬୦୦୦୯୭**

ଜାନୁୟାରୀ ୨୦ ତାରିଖ ସୁଦ୍ଧା ପରିଚେୟୋକ୍ତି ଆମ ପାଖରେ ପହଞ୍ଚିବା ଦରକାର । ସର୍ବଶ୍ରେଷ୍ଠ ପ୍ରତିଯୋଗୀଙ୍କୁ ଶହେଟଙ୍କା ପୁରସ୍କାର ଭାବେ ପ୍ରଦାନ କରାଯିବ ।

## ଭଛା

ପୂର୍ବ ସଂଖ୍ୟା ଚିତ୍ର ପ୍ରତିଯୋଗିତାର ବିଜେତା
ପ୍ରତାପ କୁମାର ରାଉଳ
ସା/ପୋ : କୁଆଁର ମୁଣ୍ଡା
ଜି: ସୁନ୍ଦରଗଡ଼ (ଓଡିଶା)
ପିନ୍: ୭୭୦୦୩୯





୧ମ ଚିତ୍ର : ଗୀତ ଗାଆ ମୋର କୁନି କଣ୍ଢେଇ
ମନ ଭଲ ନାହିଁ ମୋର,
୨ୟ ଚିତ୍ର : ମାଆ ଫେରି ନାହିଁ ଘରକୁ ଏ ଯାଏଁ
ବାଟ ମୁଁ ଚାହିଁଛି ତାର !


ଜହ୍ନମାମୁ ବାର୍ଷିକ ଦେୟ
ଡାକଯୋଗେ ଟ୧୨୦/-

Payment in favour of CHANDAMAMA INDIA LIMITED
No. 82, Defence Officers Colony, Ekkatuthangal, Chennai - 600 097

Printed and Published by B. Viswanatha Reddi at B.N.K. Press Pvt. Ltd., Chennai - 600 026 on behalf of Chandamama India Limited, No. 82, Defence Officers Colony, Ekkatuthangal, Chennai - 600 097. Editor : Viswam

